ଡାକ୍ତର ବସନ୍ତ ମହାପାତ୍ର ରଚିତ

ନୂତନ ମଞ୍ଚଶୈଳୀର ନାଟକ

# ଶୃଙ୍ଗାର-ଶତକ



ଓଡ଼ିଶା ବୁକ୍ ଷ୍ଟୋର

# ଶୃଙ୍ଗାର-ଶତକ


ନାଟ୍ୟକାର :

ଡାକ୍ତର ବସନ୍ତ ମହାପାତ୍ର

ଲିପି : ମୋନାଲିସା

ପ୍ରକାଶକ :

ଶ୍ରୀ ଗୋବନ୍ଦଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

ବିଜୟା ଦଶମୀ—୧୯୮୩

ମୁଦ୍ରଣ :

ମା' ସନ୍ତୋଷୀ ପ୍ରେସ୍

କାଜିବଜାର, କଟକ-୭୫୩୦୦୧

ମୂଲ୍ୟ :

ଶୋଭନ—ଦଶଟଙ୍କା

ସାଧାରଣ—ସାତଟଙ୍କା ପଚ୍ଚିଶ ପଇସା


## SHRUNGARA-SHATAKA


*Dramatist :*

**Dr. Basanta Mohapatra**

*Published by :*

**Sri Gobindacharan Patra**

**ORISSA BOOK STORE**

Binodbehari
Cuttack-753002

*First Edition :*

Bijaya Dasami—1983

*Printer :*

**MAA' Santoshi Press**

Kajibazar, Cuttack 753001

**Price : Rs. 10-00** [partly illegible]

ମୋ 'ନିମ୍ମୁ'ଙ୍କୁ—

ଯିଏ ମୋ ସଂସାରର ସବୁ ଜଞ୍ଜାଳ ସ୍ୱେଚ୍ଛାରେ
ବହନ କରି ଡାକ୍ତରୀ ଜୀବନ ସହିତ ଲେଖନୀ-
ଟିଏ ମୋ ହାତକୁ ବଢ଼ାଇ ଦେଲା ।

ଲେଖକ

## ପ୍ରଥମ ରଜନୀର କୁଶୀଳବ ଗଣ

| ଭୂମିକା | କଳାକାର |
|---|---|
| ଲଲ୍ଲୁ | ସଚ୍ଚି ଦାସ |
| ରସିକ | ନିର୍ମଳ ମହାପାତ୍ର |
| ସୂର୍ଯ୍ୟଖିଲୁ | ନାରାୟଣ ପଣ୍ଡା |
| ଜେମସ୍ | ହିମାଂଶୁ ପାରେଖ |
| ଗୁଡୁଚରଣ | ଲକ୍ଷ୍ମୀଧର ମୁଦୁଲି |
| ଜ୍ଞାନପ୍ରକାଶ ବ୍ରହ୍ମଗୃହୀ | ଦାସ ପଟ୍ଟନାୟକ |
| ପ୍ରାଣନାଥ | |
| ଅଗାଧୁ | ବିପ୍ରଚରଣ |
| ଲାବଣ୍ୟ | ନୃତ୍ୟଶିଳ୍ପୀ କୁମାରୀ ଇନ୍ଦ୍ରାଣୀ ବେହେରା |
| ପାଟ | ତନୁଜା ଦେବୀ |
| ସୁନନ୍ଦନା | କୁମାରୀ ନିରୂପମା ମହାରଣା । |

# ବ୍ୟକ୍ତିଗତ

'ଶୃଙ୍ଗାର ଶତକ' ବିଭିନ୍ନ ସ୍ଥାନରେ ଅଭିନୀତ ହେଲାବେଳେ ମୋର ବନ୍ଧୁ, ଶୁଭେଚ୍ଛୁ ଓ ସମାଲୋଚକ ମାନଙ୍କ ମୁଖରୁ ଗୋଟିଏ ପ୍ରଶ୍ନ ବାରମ୍ବାର ମୋ ମନକୁ ଆନ୍ଦୋଳିତ କରିଛି । ତାହା ହେଲା 'ଗଣିକା' ବୃତ୍ତିର ପରମ୍ପରା ଓ ପରିବେଶ ।

ଆଜି କୌଣସି ସଙ୍କୋଚ ନ ରଖି ମୁଁ ସ୍ୱୀକାର କରୁଛି ଯେ ଗଣିକାମାନଙ୍କ ସମ୍ପର୍କରେ ଲେଖିବା ପାଇଁ ଖୋରାକ ଯୋଗାଇଥିବା ନାରୀ ନିଜେ ଜଣେ ପାରମ୍ପରିକ ଗଣିକା ବୃତ୍ତିର ନାୟିକା । ତା' ସହିତ ପରିଚୟଟା ଆକସ୍ମିକ ।

୧୯୬୪ ମସିହା । ସେତେବେଳେ ମୁଁ S.C.B. Medical Collegeର ପ୍ରସୂତି ଓ ସ୍ତ୍ରୀରୋଗ ବିଭାଗରେ କ୍ଲିନିକାଲ ଟ୍ୟୁଟର ଓ P.G. ଛାତ୍ର ଥାଏ । ସେଇଠାରେ ରୋଗିଣୀଟି ସହିତ ମୋର ପରିଚୟ ହୁଏ । କ୍ରମେ କଥା ପ୍ରସଙ୍ଗରେ ସେ ତା'ର ବିଗତ ଜୀବନର ଅନେକ କିଛି ମୋ ଆଗରେ ପ୍ରକାଶ କରେ । ହଠାତ୍ ଦିନେ ସେ ତା'ର 'ଆଈ'—ଯେ ଏକଦା ନଗରୀର ଅନନ୍ୟା ସୁନ୍ଦରୀ ଏବଂ ନୃତ୍ୟସଂଗୀତ-ନିପୁଣା ଗଣିକା ଥିଲା, ତା' ବିଷୟ କିଛି କିଛି କଥା ପ୍ରସଙ୍ଗରେ ରାୟ ବାହାଦୂର ସୁଦାମ ନାୟକଙ୍କ କଥା ଉଲ୍ଲେଖ କରେ । ମୁଁ ଆଶ୍ଚର୍ଯ୍ୟ ହୁଏ । ରାୟବାହାଦୂର ମୋର ପଣ ଅଜା । ସେ ଥିଲେ ଜଣେ ପକ୍କା ବ୍ୟୁରୋକ୍ରାଟ୍ । ବ୍ରିଟିଶ ସରକାରଙ୍କର ପ୍ରଶାସନିକ ଅଫିସର । ଅଫିସ୍ ଗଲାବେଳେ ପୁରାପୁରି ସାହେବ । ଦରଓ୍ୟାନ, ଷ୍ଟେନୋ, ସେକ୍ରେଟେରୀ ନେଇ ସେ ଯେତେବେଳେ ଅଫିସରେ ବସନ୍ତି, ମହାବଳ ବାଘ ବି ଭୟ କରିବ । କିନ୍ତୁ ଅଫିସ୍‌ରୁ ଫେରି, ପୋଷାକ ଖୋଲି ଦେଲେ ସେ ନିଜକୁ ସାମିଲ କରି ଦିଅନ୍ତି ଅନ୍ୟ ଏକ ଜଗତରେ । ସନ୍ଧ୍ୟାରେ ଧୋତି, ପଞ୍ଜାବୀ, ଅତର, ମଲ୍ଲୀମାଳ । ଖୋଲା ଘୋଡ଼ା ଗାଡ଼ିରେ କଟକ ସହର ପରିକ୍ରମା । କାଠଯୋଡ଼ି କୂଳେ ହାଓ୍ୱାଖିଆ, ପ୍ରଶାସନିକ ବନ୍ଧୁମାନଙ୍କ ମହଲରେ ଆଡ୍ଡା ଦିଆ କିମ୍ବା ଗଙ୍ଗାମନ୍ଦିର କୋଠୀରେ ବସି ରସିକ ବନ୍ଧୁମାନଙ୍କ ଗହଣରେ ନାଚ ଗୀତର ଜଲସା ଉପଭୋଗ କରିବା ।

ସେଇ 'ଜଲସା' ପୁରାପୁରି ରାଜକୀୟ । ଉପରେ ମହମବତୀର ଝାଡ଼ । ତଳେ ପାର୍ସିଆନ କାର୍ପେଟ୍ । ଅତର, ଫୁଲ ଆଉ ଧୂପବତୀର ମହକ ଭିତରେ ଭଞ୍ଜ, କବିସୂର୍ଯ୍ୟ, ସାମନ୍ତସିଂହାରଙ୍କର ଶୃଙ୍ଗାର ରସର ଗୀତ ଓ ନୃତ୍ୟ । ଉକ୍ତ ନୃତ୍ୟ ଗୀତରେ ଯେଉଁ ଅନନ୍ୟା ସୁନ୍ଦରୀ, ନୃତ୍ୟ-ସଂଗୀତ-ନିପୁଣା ଗଣିକାମାନେ ଅଂଶ

ଗ୍ରହଣ କରୁଥିଲେ, ସେମାନେ ଥିଲେ ସେ ଯୁଗର 'ଗଣନାୟିକା' । କିନ୍ତୁ ସେଥି-ପାଇଁ ସେମାନଙ୍କ ମନରେ କୌଣସି ହୀନମନ୍ୟତା ବା କୁଣ୍ଠା ନଥିଲା । ସନ୍ଧ୍ୟା ହେଲେ ସେମାନଙ୍କ ଘରେ ଅନେକ ରଜା, ରାୟବାହାଦୂର, ଦେଓ୍ୱାନ ବାହାଦୂରଙ୍କ ଧାଡ଼ି ଧାଡ଼ି ସୁଆରି, ପାଲିଙ୍କିର ଭିଡ଼ ହେଉଥିଲା । କ୍ୱଚିତ ସେମାନେ ବହୁ ପାରିତୋଷିକ ନେଇ ବଡ଼ ବଡ଼ ଜଲସାରେ ବଡ଼ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଘରେ କଳା ପରିବେଷଣ କରୁଥିବେ ।

ସେ ଯୁଗରେ ଥିଏଟର, ଚଳଚ୍ଚିତ୍ର, ଟେଲିଭିଜନ, ବେତାର ଇତ୍ୟାଦି ଗଣ ମାଧ୍ୟମ ନଥିଲା । ତେଣୁ ତତ୍କାଳୀନ ଆମୋଦ ପ୍ରମୋଦର ଏକ ନିପୁଣ ଚିତ୍ର ଆମ ସାହିତ୍ୟ, ନାଟକ ଓ ଚଳଚ୍ଚିତ୍ର ମାଧ୍ୟମରେ ଲିପିବଦ୍ଧ କରି ରଖିବାରେ ଲଜ୍ଜାର କୌଣସି କାରଣ ଦେଖୁନାହିଁ ।

ସେଇ ସ୍ୱର୍ଗତଃ 'ଅଜା' ମୋର ଆଜି ନାହାନ୍ତି । ଯେଉଁଦିନ ଏ ବହି ପ୍ରକାଶ ପାଇବ, ପ୍ରଥମ କପିଟି ମୁଁ ବିନମ୍ର ପ୍ରଣାମ ଜଣାଇ ତାଙ୍କୁ ନିବେଦନ କରିବି ତାଙ୍କ ଫଟୋ ଆଗରେ । 'ବୁଢ଼ା' ବଞ୍ଚିଥିଲେ ନିଶ୍ଚୟ କହିଥାଆନ୍ତେ "ଶଳା, 'ଶୃଙ୍ଗାର ରସ' ଗୁଟା କଣ ବୁଝୁଛୁ ବେ ? ଆ ମୋ ପାଖକୁ ଆ ବୁଝେଇ ଦେବି ।" ତା' ପରେ ମୋ କାନରେ ଯାହା କହିଥାଆନ୍ତେ···

ସେଇ ପରମ୍ପରା ଓ ବଂଶର ଦାୟାଦ ଭାବରେ ମୁଁ ଆଜି ଗର୍ବ ଅନୁଭବ କରୁଛି । ଆଜି ମଧ୍ୟ ଅଜାଙ୍କର ଆଦିନିବାସ ଭଦ୍ରକରେ ସେଇ ଦ୍ୱିତଳ ପ୍ରାସାଦଟି ଛିଡ଼ା ହୋଇଛି ଅତୀତର ମୂକ ସାକ୍ଷୀ ହୋଇ । ସେ କୋଠା ଯିଏ ଦେଖିବ ସେ ବିସ୍ମିତ ହେବ ତା'ର ସ୍ଥାପତ୍ୟରେ । ସେଠି ପାରମ୍ପରିକ ଓ ପ୍ରାକ୍ ସ୍ୱାଧୀନତା ଅମଳର ଆଧୁନିକ ଶୈଳୀର ସୂକ୍ଷ୍ମ ସମନ୍ୱୟ ହୋଇଛି । ଇତିହାସର ଏ ପୃଷ୍ଠା ସେତିକି ଥାଉ ।

ବି: ଦ୍ର:—ଉପରୋକ୍ତ 'ବ୍ୟକ୍ତିଗତ' କେତୋଟି ଧାଡ଼ି ଯେଉଁମାନେ ନାଟକ ମଞ୍ଚସ୍ଥ କରିବେ ସେମାନଙ୍କ ପାଇଁ ନୁହେଁ । କେବଳ ସାମ୍ବାଦିକ, ବନ୍ଧୁ ଓ ସମାଲୋଚକ ମାନଙ୍କ ପାଇଁ ଉଦ୍ଦିଷ୍ଟ । ନଚେତ୍ ଏହା ଲେଖିବାରେ ମୋର କୌଣସି ବାହାଦୂରି ନେବାର ନାହିଁ ।

ଲେଖକ

ବିଜୟା ଦଶମୀ

ତା ୧୬ । ୧୦ । ୮୩

# ଶୃଙ୍ଗାର ଶତକର ପ୍ରସ୍ତୁତି

୧୯୭୫ ମସିହା । ସେତେବେଳକୁ ଓଡ଼ିଶାର ପେଷାଦାର ମଞ୍ଚରେ ଅବକ୍ଷୟ ଆରମ୍ଭ ହୋଇ ଯାଇଛି । କବିଚନ୍ଦ୍ର ଏବଂ ତାଙ୍କ ଅନୁଗାମୀ ନାଟ୍ୟକାର ମାନଙ୍କର ପ୍ରଚଳିତ ନାଟ୍ୟ-ଶୈଳୀ ଆଧୁନିକ ଦର୍ଶକଙ୍କୁ ଆଉ ଆଗ ଭଳି ଆନନ୍ଦ ଦେଇ ପାରୁନି । ସ୍ୱନାମଧନ୍ୟ ନାଟ୍ୟକାର ମନୋରଞ୍ଜନ ଦାସଙ୍କର "ଆବସର୍ଡ଼ ନାଟ୍ୟ ଆନ୍ଦୋଳନ" କେବଳ ବୁଦ୍ଧିଜୀବୀ ମାନଙ୍କର ଚେତନାକୁ ସ୍ପର୍ଶ କରୁଚି । କିନ୍ତୁ ସାଧାରଣ ଗଣମାନସକୁ ଆନନ୍ଦ ଦେଇ ଭଳି ହୋଇପାରି ନାହିଁ । ଦର୍ଶକ ଖୋଜୁଚି···ନୂଆ କିଛି !!! ନାଟ୍ୟକାର, ନିର୍ଦ୍ଦେଶକ, ମଞ୍ଚ ପ୍ରଯୋଜକ···ସମସ୍ତେ ଖୋଜୁଚନ୍ତି ନୂଆ କିଛି ଫର୍ମୁଲ । ମୁଁ ମଧ ଖୋଜୁଥିଲି ନୂଆ କିଛି । ନୂ-ଆ-କି-ଛି ।

ଠିକ୍ ସେତିକି ବେଳକୁ କଟକରେ ଟେଲିଭିଜନ ଷ୍ଟେସନ ପ୍ରତିଷ୍ଠା ହେଉଥାଏ । ଟେଲିଭିଜନର ବିଭିନ୍ନ ବିଭାଗର ଦାୟିତ୍ୱରେ N. S. D.ରୁ ପାଶ୍ କରିଥିବା ଅନେକ ପ୍ରତିଭାବାନ କୁଶଳୀ କଳାକାର ଓ ମଞ୍ଚର ବିଭିନ୍ନ ଦିଗରେ ଅଭିଜ୍ଞତା ହାସଲ କରିଥିବା ନିର୍ଦ୍ଦେଶକ, ଆଲୋକ ସମ୍ପାତ ଶିଳ୍ପୀ, ମଞ୍ଚ ଡିଜାଇନର, ଶବ୍ଦ ଯନ୍ତ୍ରୀ ଇତ୍ୟାଦି ଦେଖା ଦେଲେ ।

'ଶୃଙ୍ଗାର ଶତକ' ନାଟକର ପରିକଳ୍ପନା ମୁଁ ଆଗରୁ କରି ସାରିଥାଏ । କେବଳ ତାହାର ପରିବେଷଣ ପାଇଁ ଏକ ନୂତନ ମଞ୍ଚ ଶୈଳୀର ସନ୍ଧାନ କରୁଥିଲି । ଏତିକିବେଳେ ମୋର ପୂର୍ବ ପରିଚିତ ଅନୁଜ-ପ୍ରତିମ ପ୍ରଫୁଲ୍ଲ ମହାନ୍ତି ଟେଲିଭିଜନର ପରିସର ମଧ୍ୟରେ ମୋର ଦେଖା ହେଲେ । ରେଭେନ୍ସା କଲେଜରେ ସେ ଯେତେବେଳେ ବାର୍ଷିକ ଛାତ୍ର ଥିଲାବେଳେ; ମୋର 'ମୁଠାଏ ମାଟି' ନାଟକ ପାଇଁ ମୁଁ ତାଙ୍କୁ ସଙ୍ଗୀତ ସୁରକାର ଭାବେ ବାଛି ଆଣିଥିଲି । ଇତିମଧ୍ୟରେ ସେ ଦିଲ୍ଲୀ N. S. D.ରୁ ଡିପ୍ଲୋମା ହାସଲ କରି, ଟେଲିଭିଜନର ପ୍ରଯୋଜନା ବିଭାଗରେ ଆସି ଯୋଗ ଦେବା ମୋ ପାଇଁ ଆନନ୍ଦ ଓ ଗୌରବର ବିଷୟ ଥିଲା । ପ୍ରଫୁଲ୍ଲ ସହିତ 'ଶୃଙ୍ଗାର ଶତକ' ନାଟକ ନେଇ ଆଲୋଚନା କଲି । ସେ ମଧ ଉକ୍ତ କାହାଣୀ ଶୁଣି ଖୁବ୍ ଖୁସି ହେଲେ ଏବଂ ଆମେ ଦୁହେଁ ଠିକ୍ କଲୁ ଖୁବ୍ ଶୀଘ୍ର କଟକରେ ତାହା ମଞ୍ଚସ୍ଥ କରିବୁ । ଟେଲିଭିଜନର ଡିଜାଇନର ପ୍ରସନ୍ନ ମହାନ୍ତିଙ୍କ ସହିତ ମଧ ପରିଚୟ ହୁଏ ଏଇ କଟକରେ । ଆଗରୁ ସେ ଥରେ ମୋ ରାଣୀହାଟ ବସାକୁ ଆସିଥିଲେ ଏବଂ ନୂତନ ମଞ୍ଚଶୈଳୀ ନେଇ ଦିଲ୍ଲୀରେ କ'ଣ ସବୁ ଚାଲିଚି ସେଇ ଆଲୋଚନା ଆମେ କରିଥିଲୁ । ବର୍ତ୍ତମାନ ତାଙ୍କ ପ୍ରତିଭାର ପୂର୍ଣ୍ଣ ପରିଚୟ ପାଇ ମୁଁ 'ଶୃଙ୍ଗାର ଶତକ' ନାଟକର ମଞ୍ଚଶୈଳୀ ଏବଂ ଆଲୋକ ସମ୍ପାତର

ଦାୟିତ୍ୱ ତାଙ୍କ ଉପରେ ଛାଡ଼ିଦେଲି । କଳା ନିର୍ଦ୍ଦେଶକ ଓ ମଞ୍ଚ ଆଲୋକ ସମ୍ପାତରେ ତାଙ୍କର କୃତିତ୍ୱ ସେତେବେଳେ ଓଡ଼ିଶାର ଖୁବ୍ କମ୍ ଲୋକ ଜାଣିଥିଲେ । କିନ୍ତୁ ସେତେବେଳକୁ ଦିଲ୍ଲୀରେ ଉକ୍ତ କ୍ଷେତ୍ରରେ ସେ ଥିଲେ ସୁପ୍ରତିଷ୍ଠିତ । ଆଧୁନିକ ମଞ୍ଚ-ଶୈଳୀ ଓ ଆଲୋକର ଯାଦୁକର ପ୍ରସନ୍ନ ମହାନ୍ତି 'ଶୃଙ୍ଗାର ଶତକ' ନାଟକରେ ପ୍ରଥମଥର ପାଇଁ ଦର୍ଶକ ମାନଙ୍କୁ ଏକ ନୂତନ ସ୍ୱାଦ ପରିବେଷଣ କରିବେ ବୋଲି ମୁଁ ନିଶ୍ଚିତ ହେଲି । ପ୍ରଫୁଲ୍ଲ ଇତିମଧ୍ୟରେ ଶିଳ୍ପୀ ମାନଙ୍କୁ ସଂଗ୍ରହ କରି ରିହର୍ସାଲ୍ ଆରମ୍ଭ କରିଦେଲା, ରାଷ୍ଟ୍ରଭାଷା ଭବନରେ । ପ୍ରସନ୍ନ ମହାନ୍ତିଙ୍କ ଡିଜାଇନ୍ ନେଇ, ମଞ୍ଚଶୈଳୀ ନିର୍ମାଣ କଲେ ଶ୍ରୀ ନିଖିଲ୍ ବରଣ, ଯିଏ ଆଜି ଓଡ଼ିଶା ତଥା ବମ୍ବେ ଚଳଚିତ୍ର ଜଗତର ଜଣେ ସୁନାମଧନ୍ୟ କଳା ନିର୍ଦ୍ଦେଶକ । ପ୍ରଫୁଲ୍ଲ, ପ୍ରସନ୍ନ ଓ ନିଖିଲ ତଥା ନୂତନ କଳାକାରମାନଙ୍କୁ ନେଇ ନୂଆ କିଛି ଗୋଟାଏ କରିବୁ ବୋଲି ଆମ ଭିତରେ ଅପୂର୍ବ ଉତ୍ସାହ ଉନ୍ମାଦନା ଦେଖାଦେଲା । ସେତେବେଳକୁ ମୋର ସ୍ୱଳ୍ପ ଆୟରୁ କିଛି ଅର୍ଥ ଖର୍ଚ୍ଚ କରି ରିହର୍ସାଲ ଚାଲିଥାଏ । ହଠାତ୍ ଦିନେ ବମ୍ବେ ଫଟୋ ଷ୍ଟୁଡ଼ିଓ (ରାଣୀହାଟ)ର ମାଲିକ ଟୁକୁ ମିଶ୍ର ମୋତେ ଜଣାଇଲେ ଯେ, 'ନୀଳ ଚକ୍ର' ଅନୁଷ୍ଠାନର କର୍ମକର୍ତ୍ତାମାନେ ଗୋଟିଏ ନାଟ୍ୟ ପ୍ରଯୋଜନା କରିବାର ପରିକଳ୍ପନା କରୁଛନ୍ତି । ଟୁକୁମିଶ୍ରଙ୍କ ମାଧ୍ୟମରେ ନୀଳଚକ୍ର ଅନୁଷ୍ଠାନର ମୁଖ୍ୟ ବ୍ରହ୍ମାନନ୍ଦ ପଣ୍ଡା ଏବଂ ତାଙ୍କ ସହଯୋଗୀମାନଙ୍କ ସହିତ ପରିଚୟ ହୁଏ । ଆର୍ଥିକ ସାହାଯ୍ୟର କଥାବାର୍ତ୍ତା ମଧ୍ୟ ହୋଇଯାଏ । ସେତେବେଳକୁ ସରକାରୀ Govt. pressରେ ମୁଁ ଡାକ୍ତର ଥାଏ । ତେଣୁ ମୋର ସମସ୍ତ ଶକ୍ତି, ପ୍ରଫୁଲ୍ଲର ସମସ୍ତ ଉତ୍ସାହ ଓ ନୀଳଚକ୍ରର ଆର୍ଥିକ ସହାୟତା ମିଶି ରିହର୍ସାଲ ଆହୁରି ବେଗରେ ଆଗେଇ ଚାଲିଲା । ନାରୀ ଶିଳ୍ପୀର ମଧ୍ୟ ଅଭାବ ହେଲା ନାହିଁ । କୁମାରୀ ନିରୁପମା, ନୃତ୍ୟଶିଳ୍ପୀ କୁମାରୀ ଇନ୍ଦିରା ବେହେରାଆଙ୍କ ପରି ପ୍ରତିଭାମାନେ ଆମ ସହିତ ଯୋଗ ଦେଇଥିଲେ କୌଣସି ଆର୍ଥିକ contract ନ ରଖି । ଦୀର୍ଘ ଏକମାସ ଧରି ରିହର୍ସାଲ । ତା'ପରେ—'ଶୃଙ୍ଗାର ଶତକ' ନାରୀ ସଂଘ ସଦନରେ ମଞ୍ଚସ୍ଥ ହେଲା । ନାଟକର ଜନପ୍ରିୟତା ନେଇ କୌଣସି ମତଦ୍ୱୈଧ ଦେଖା ଦେଲା ନାହିଁ । I.P.S. ଅଫିସର ଶ୍ରୀ ରାଜେନ୍ଦ୍ର ଦାସଙ୍କ ଠାରୁ ସାଧାରଣ ଦର୍ଶକ ପର୍ଯ୍ୟନ୍ତ ସମସ୍ତେ ଉକ୍ତ ନୂତନ ଶୈଳୀର ନାଟକଟିକୁ ଉପଭୋଗ କରିଥିଲେ । କେବଳ ମୋର ଲେଖା ତାର ଏକକ ସାର୍ଥକତା ନଥିଲା । ପ୍ରଫୁଲ୍ଲ ମହାନ୍ତିଙ୍କ ନିର୍ଦ୍ଦେଶନା, ପ୍ରସନ୍ନ ମହାନ୍ତିଙ୍କ ଅଭିନବ ମଞ୍ଚ ସଜ୍ଜା ଏବଂ ଆଲୋକ ସମ୍ପାତ, କଳାକାର ମାନଙ୍କର ସୁନିପୁଣ ଅଭିନୟ, ଗୁରୁ ବିଶ୍ୱନାଥ ରାଓଙ୍କର ସ୍ୱର ସଂଯୋଜନା, ଗୁରୁ ରଘୁନାଥ ଦତ୍ତଙ୍କର ନିର୍ଦ୍ଦେଶନାରେ କୁମାରୀ ଇନ୍ଦିରା ବେହେରାଆଙ୍କର ଅପୂର୍ବ ନୃତ୍ୟ ଓ ଭାବାବେଗ ଇତ୍ୟାଦି ମିଶି ଏକ ସୁଶୃଙ୍ଖଳ team workର ସ୍ୱାକ୍ଷର ବହନ କରିଥିଲା ଏଇ ନାଟକ ।

କଟକରେ ମଞ୍ଚସ୍ଥ ହେଲପରେ ସାମ୍ବାଦିକ ବନ୍ଧୁମାନେ ଏବଂ କଟକର ମଞ୍ଚମଣ୍ଡଳି ଏଇ ଧରଣର ଏକ ନୂତନ ଧାରାକୁ ସ୍ୱାଗତ କରିଥିଲେ । ତା'ପରେ ନାଟକଟି ସେଇ 'ନୀଳଚକ୍ର' ତରଫରୁ ମଞ୍ଚସ୍ଥ ହେଲା ରାଉରକେଲାରେ । ରାଉର-କେଲାର ମୁକ୍ତମଞ୍ଚ ଭଞ୍ଜ ମଣ୍ଡପରେ ହେଇ ଶିଳ୍ପୀମାନେ ଯାଇ ନାଟକଟି ମଞ୍ଚସ୍ଥ କରିଥିଲେ ।

ରାଉରକେଲାରେ ନାଟକଟି ମଞ୍ଚସ୍ଥ ହେଲା ପରେ ଓଡ଼ିଶାର ବହୁ ଅନୁଷ୍ଠାନ ନାଟକଟିକୁ ସେମାନଙ୍କ ଅଞ୍ଚଳରେ ମଞ୍ଚସ୍ଥ କରିବା ପାଇଁ ନିମନ୍ତ୍ରଣ କରିଥିଲେ । କିନ୍ତୁ ବିଭିନ୍ନ ଆୟୋଜନ ଏବଂ ଆମର କୁଶଳୀ ଶିଳ୍ପୀମାନଙ୍କ ମଧ୍ୟରୁ ଅନେକ ସରକାରୀ କର୍ମସୂତ୍ରରେ ବ୍ୟସ୍ତ ହୋଇଥିବାରୁ ଆମେ ସେ ଅନୁରୋଧ ରକ୍ଷି ପାରିଲୁ ନାହିଁ ।

୧୯୭୧ ମସିହାରେ ପୁଣିଥରେ ଏଇ ନାଟକ ମଞ୍ଚସ୍ଥ ହେଲା ମେଡ଼ିକାଲ କଲେଜ ( S.C.B. ) ନାଟ୍ୟ ସଂସଦ ତରଫରୁ । ମୋର ପ୍ରତ୍ୟେକଟି ନାଟକ ଦୀର୍ଘ ଚଉଦ ବର୍ଷ ଧରି ମେଡ଼ିକାଲ ଛାତ୍ରମାନେ ଉତ୍ସାହର ସହ ଏବଂ ନାଟ୍ୟ ସଂସଦ ତରଫରୁ ପ୍ରଥମ ଅଭିନୀତ ହୁଏ ସେଇ S.C.B. medical କଲେଜ ରଙ୍ଗମଞ୍ଚରେ । କିନ୍ତୁ ଏଇ ହେଲା ପ୍ରଥମ ବ୍ୟତିକ୍ରମ । "ଶୃଙ୍ଗାର ଶତକ" 'ନୀଳଚକ୍ର' ତରଫରୁ ପ୍ରଥମ ଥର ପାଇଁ ଅଭିନୀତ ହେଲା ନାଗରି ସଂଘ ସଦନରେ ଏବଂ ରାଉରକେଲାରେ ।

୧୯୭୧ ମସିହା ଏପ୍ରିଲ ୧୩, ୧୪ ଓ ୧୫ ତାରିଖରେ S. C. B. Madical College ନାଟ୍ୟ ସଂସଦ ତରଫରୁ ନାଟକଟି ମଞ୍ଚସ୍ଥ ହେଲା । ନିର୍ଦ୍ଦେଶକ ଓ ମଞ୍ଚ ତଥା ଆଲୋକ ସେଇ ପ୍ରଫୁଲ୍ଲ ଓ ପ୍ରସନ୍ନଙ୍କ ପ୍ରତିଭାର ସମନ୍ୱୟ । ସାମ୍ବାଦିକ ବନ୍ଧୁ ତଥା ମେଡ଼ିକାଲ କଲେଜର ଛାତ୍ର ଏବଂ ଅଧ୍ୟାପକ ବନ୍ଧୁମାନେ, ବହୁ ବୁଦ୍ଧିଜୀବି ଦର୍ଶକ, ସମାଲୋଚକ, ନାଟକଟିର ସମାଲୋଚନା, ଆଲୋଚନା ଓ ସମୀକ୍ଷା କରି ଏହା ଏକ ନୂତନ ଶୈଳୀ ବୋଲି ସ୍ୱୀକାର କରିଥିଲେ ।

ଉପରୋକ୍ତ ତିନୋଟି ମଞ୍ଚରେ ବିଭିନ୍ନ ପରିବେଶରେ ଏବଂ ବିଭିନ୍ନ ଧରଣର ଦର୍ଶକମାନଙ୍କ ଦ୍ୱାରା ନାଟକଟି ଆଦୃତ ହେଲପରେ ଆମେ ଏଇ ଧାରାକୁ 'MULTI ZONE STYLE' ନାମିତ କରି ବିଭିନ୍ନ ନାଟ୍ୟ ଆଲୋଚନା ସେମିନାରରେ ପ୍ରଚାର କରିବାକୁ ଲାଗିଲୁ । ମୋର ପରବର୍ତ୍ତୀ କେତୋଟି ନାଟକ ମଧ୍ୟ ସେହି ଧାରାରେ ଲେଖା ହେଲା । 'ଜ୍ୱାଳା', ଐତିହାସିକ ନାଟକ 'ବହ୍ନିକନ୍ୟା' ଇତ୍ୟାଦି ଆଗରୁ ଛପା ହୋଇ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ମଞ୍ଚସ୍ଥ ହେଲା ଏବଂ କ୍ରମେ ଏହି ଧାରା ସମ୍ପ୍ରସାରିତ ହେଲା । ଏହି ଧରଣର ମଞ୍ଚ ଶୈଳୀ ପେଷାଦାର ମଂଚକୁ ପୁଣିଥରେ ପୁନର୍ଜୀବିତ କରିପାରେ ବୋଲି ମୁଁ ଥରେ

ରେଭେନସା କଲେଜର ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତିଙ୍କ ସହିତ ଆଲୋଚନା କରିଥିବାର ମନେ ପଡ଼େ । ସେତେବେଳେ ମୁଁ ଜୋର୍ ଦେଇ କହିଥିଲି ଯେ ନାଟ୍ୟ ଆନ୍ଦୋଳନରେ ଏଇ ଧାରା, "ଏକ ରେନେସା" ହୋଇପାରେ ।

ଏହି ନାଟକଟି ଆଜି ପ୍ରାୟ ଆଠ ବର୍ଷ ପରେ ଛପା ହୋଇ ଲୋକ ଲୋଚନକୁ ଆସିଛି । ଏଥିପାଇଁ ପ୍ରଥମେ ମୁଁ ଧନ୍ୟବାଦ ଦେବି ମୋର ପବ୍ଲିଶର ଗୋବିନ୍ଦ ସାହିଙ୍କୁ । ତାଙ୍କ ସହିତ ପରିଚୟ ହୁଏ ବନ୍ଧୁ ଗିରିକିଶୋର ଦାସଙ୍କ (ପ୍ରଖ୍ୟାତ ଲେଖକ ତଥା ଜାତୀୟ ସ୍ତରରେ ପୁରସ୍କୃତ) ମାଧ୍ୟମରେ । କିନ୍ତୁ ଗୋବିନ୍ଦବାବୁ ଏକ ନୂତନ ନାଟକ ଚାହିଁଲେ । 'ଶୃଙ୍ଖଳିତ ଶତକ' କପି କରି ତାଙ୍କୁ ଦେବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଚଳଚ୍ଚିତ୍ର ଓ ସୃଜନଶୀଳ ଜୀବନ ମୋତେ ତାହା କରାଇ ଦେଲା ନାହିଁ । ହଠାତ୍ ଦିନେ ମୋର ସାନଭାଇ ପ୍ରଖ୍ୟାତ ଔପନ୍ୟାସିକ ମହାପାତ୍ର ଯତୀନ୍ଦ୍ର କୁମାର ନାଟକଟିକୁ ନେଇ ଗୋବିନ୍ଦବାବୁଙ୍କୁ ଦେଇ ଆସିଲେ । ସବୁ 'କାଳିଆ'ର ଇଚ୍ଛା । ଯୋଗକୁ ଏତିକିବେଳେ ନୃସିଂହ ମଧ୍ୟ ଆସି ମୋତେ ନାଟକ ଲେଖିବା ଓ ଛପିବା ଦିଗରେ ପ୍ରେରଣା ଯୋଗାଇବାକୁ ଆରମ୍ଭ କରିଦେଲା । ଖାଲି ସେତିକି ନୁହେଁ । 'ନୃସିଂହ' (ମୋର ପୂର୍ବ ପରିଚିତ 'ମୁଠାଏ ମାଟି'ର ସେଇ ହାପ୍ ପ୍ୟାଣ୍ଟ ପିନ୍ଧା ପିଲାଟି, ଯିଏ ଇତିମଧ୍ୟରେ ବେତାର ଓ ଟେଲିଭିଜନରେ ଜଣେ ସୁଲେଖକ ହୋଇ ପାରିଛି) ପ୍ରେସ୍‌କୁ ଦୌଡ଼ିବା, Cover design କରିବା ଇତ୍ୟାଦି ସମସ୍ତ ଦାୟିତ୍ୱ ନେଇ ମୋତେ ସମସ୍ତ ଚିନ୍ତା ଓ ଜଞ୍ଜାଳରୁ ମୁକ୍ତି ଦେଲା । ସେଥିପାଇଁ ମୁଁ ତା ନିକଟରେ ଚିରକୃତଜ୍ଞ । ଆଜି ନାଟକଟି ମୁଦ୍ରିତ ହେବା ପରେ ସମାଲୋଚକ, ସାମ୍ବାଦିକ ଓ ନାଟ୍ୟ ପ୍ରେମୀ ମାନେ କିପରି ଭାବେ ତାକୁ ଗ୍ରହଣ କରିବେ ତାହା ମୁଁ ଲକ୍ଷ୍ୟ କରିବାକୁ ଚାହୁଁଛି । କାରଣ ଇତି ମଧ୍ୟରେ କେତେବର୍ଷ ଆଗେଇ ଯାଇଛି···ଆଉ ମୁଁ ମଧ୍ୟ ଅସୁସ୍ଥତା ଯୋଗୁଁ ପଛେଇ ଯାଇଛି ।

ତେଣୁ ସମୟର ପ୍ରବାହରେ ନାଟ୍ୟ ଆନ୍ଦୋଳନରେ କି କି ନୂଆ ଫର୍ମୁଲା ସବୁ ଆସି ଯାଇଛି ତାହା ମୁଁ ଦେଖିବାକୁ ଚାହେଁ—ମୋର ନାଟ୍ୟକାର ବନ୍ଧୁ ଅଧ୍ୟାପକ ହରିହର ମିଶ୍ର, ଅଧ୍ୟାପକ ରମେଶ ପାଣିଗ୍ରାହୀ, ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ, ଡକ୍ଟର ରତ୍ନାକର ଚଇନି, ଅଧ୍ୟାପକ ପୂର୍ଣ୍ଣ ଚନ୍ଦ୍ରମଲ୍ଲିକ, ରତି ମିଶ୍ର ଓ ଅନ୍ୟ ମାନଙ୍କ ଲେଖନୀରୁ ।

। ଇତି ।

ଡାକ୍ତର ବସନ୍ତ ମହାପାତ୍ର
ରାଣୀହାଟ, କଟକ-୧
ଫୋନ୍—୨୨୪୮୭

# ନାଟକର ଚରିତ୍ର ପରିଚୟ

କେଶରବାଈ ଗଳିର ଦଲାଲ 'ଲଲ୍ଲୁ'—

ଗଣିକା ବସ୍ତିର ପୁରୁଖା ଦଲାଲ୍ । ପିତୃ-ମାତୃ ପରିଚୟ-ହୀନ ଜାରଜ ସନ୍ତାନ । ବେଶ-ପୋଷାକ ଲକ୍ଷ୍ନୌ ମୁସଲମାନ ଢଙ୍ଗର । କଥାବାର୍ତ୍ତା ମଧ୍ୟ ଅଧାଅଧି ହିନ୍ଦୀ ଏବଂ ପୂରା ବ୍ୟବସାୟୀ କାଇଦାର । ବୟସ ତିରିଶ ପାଖାପାଖି ।

କୌଣସି ରାଜ-ଦରବାରର ପ୍ରାକ୍ତନ କର୍ମଚାରୀ 'ରସିକ ମୋହନ'—

ଅତୀତରେ କୌଣସି ଗଡ଼ଜାତ ରାଜାଙ୍କର ନାଏବ ତହସିଲଦାର ଥିଲେ । ବର୍ତ୍ତମାନ କଚେରୀ ବାରଣ୍ଡାରେ ବସି ଦରଖାସ୍ତ ମୋହରିର କାମ କରନ୍ତି । ବୟସ ପଚାଶ ଛୁଇଁଛି । ସବୁବେଳେ ହସ ହସ ଏବଂ ଉଚ୍ଚ ସଙ୍ଗୀତର ସୁଲଳିତ ରାଗ-ରାଗିଣୀ ତାଙ୍କ ମୁହଁରେ । ଗଣିକା ବସ୍ତିକୁ ସେ ନିୟମିତ ଆସିବା ଲୋକ । ସୁନୟନା ସହିତ ସମ୍ପର୍କ ପ୍ରାୟ ତିରିଶ ବର୍ଷର । କିନ୍ତୁ ଘରର ଲୋକ ଭଳି ସେ ଆସନ୍ତି । ଗଣିକା ବସ୍ତିର କଳଙ୍କ କାଳିମା ତାଙ୍କୁ ଛୁଇଁ ପାରିନି । ଥଟ୍ଟା, ପରିହାସ, ପାନଖିଆ ଓ ରସିକତା ନେଇ ସୁନୟନା ସହିତ ଏକାନ୍ତ ଅନ୍ତରଙ୍ଗ ହୋଇ ଯାଇଛନ୍ତି ।

ଜ୍ଞାନପ୍ରକାଶ ବହୁଚାରୀ—

ଏଯୁଗର ଭଦ୍ର-ମୁଖା ପିନ୍ଧା ଜଣେ ଉଚ୍ଚାଭିଳାଷୀ ରାଜନୈତିକ ନେତା । ବୟସ ୩୫ ପାଖାପାଖି ।

ରାଜା ସୂର୍ଯ୍ୟଭାନୁ—

ଏକ ଉଚ୍ଚ ଐତିହ୍ୟ ଓ ସଂସ୍କୃତି-ସମ୍ପନ୍ନ ରାଜ-ପରିବାରର ଶେଷ ଦାୟାଦ । ଅତୀତର ଐଶ୍ୱର୍ଯ୍ୟ-ବିଳାସୀ ରାଜା ସୂର୍ଯ୍ୟଭାନୁ

ଆଜି ସମୟର ପ୍ରବାହରେ ସ୍ଥାନଚ୍ୟୁତ, ଗଣତନ୍ତ୍ରର ନିଃସ୍ୱ ନାଗରିକ । ସେଦିନର ରାଜପ୍ରାସାଦ ଆଜି ଏକ ଭଗ୍ନ-ଜୀର୍ଣ୍ଣ କୋଠି । ପରିଣତ ବୟସର ଅବସନ୍ନ କ୍ଳାନ୍ତି ନେଇ ରାଜା ସୂର୍ଯ୍ୟଭାନୁ ଖାଲି ଘୃଣିି ରହିଛନ୍ତି ଆଜିର ଏଇ ଗଣତନ୍ତ୍ର ମୁଖା-ପିନ୍ଧା ଶାସନ ଓ ଶାସକ ମାନଙ୍କୁ ।

**ଚାକର ଗୁରୁଚରଣ—**

ରାଜା ସୂର୍ଯ୍ୟଭାନୁଙ୍କର ଏକମାତ୍ର ବିଶ୍ୱସ୍ତ ପରିଚାରକ । ବୟସ ପଚାଶ ଟପିଲାଣି । କିନ୍ତୁ ଉଜ୍ଜ୍ୱଳ ଅତୀତର ଭାବ-ଦ୍ରବଣତା ଏବେ ମଧ୍ୟ ତା' ରକ୍ତରେ ରହିଛି ।

**ଗଣିକା ସୁନୟନା—**

ସହର ଉପାନ୍ତରେ ପ୍ରାଚୀନ ଗଣିକା ବସ୍ତି 'କେଶରବାଈ ଗଳି'ର ପ୍ରଥମ ବାସିନ୍ଦା । ବୟସ ଚାଳିଶ ଟପିଲାଣି । ହେଲେମଧ୍ୟ ଶାସ୍ତ୍ରୀୟ ଗୀତ-ନୃତ୍ୟ ଓ କଳାକୁଶଳତାରେ ପାରଦର୍ଶିନୀ 'ସୁନୟନା' ଆଜି ମଧ୍ୟ ଅତୀତର ଆଭିଜାତ୍ୟ ନେଇ ଗର୍ବ କରେ । ଗଣିକା ବୋଲି ତା' ମନରେ କୌଣସି ହୀନମନ୍ୟତା ନାହିଁ । ରୂପର ଝଲକ ତା'ର ମଉଳି ପଡ଼ିଛି । କିନ୍ତୁ କଣ୍ଠ ଓ ପାଦର ନୂପୁର ଧ୍ୱନିରେ ସେ ଏବେମଧ୍ୟ ଅନନ୍ୟା ।

**କୁମାରୀ ଲାବଣ୍ୟ—**

ସୁନୟନାର ଷୋଡ଼ଶୀ କନ୍ୟା, ରୂପସୀ, ନୃତ୍ୟକଳା-କୁଶଳତାର ପ୍ରତିମା । ସେ ଶିକ୍ଷିତା, ଆଧୁନିକା ହେଲେ ମଧ୍ୟ ପ୍ରାଚୀନ ରତିଶାସ୍ତ୍ରର ଗବେଷଣାରେ ନିମଗ୍ନା ।

**ଚାକରାଣୀ ପାଟ—**

ସୁନୟନା ଘରର ବୟସ୍କା ପରିଚାରିକା ।

**ପ୍ରାଣନାଥ—**

ସହରର ଜଣେ ବିତ୍ତଶାଳୀ ମଦ୍ୟ ବ୍ୟବସାୟୀ । ବୟସ ୬୫ ବର୍ଷ । କୋଠାବାଡ଼ି, ଗାଡ଼ି, ବ୍ୟାଙ୍କ ବାଲାନ୍‌ସ—କୌଣସିଥିରେ

ଅଭାବ ନାହିଁ । ଅଭାବ କେବଳ ଖାନ୍‌ଦାନି । କଥାବାର୍ତ୍ତା, ଚାଲିଚଳଣ ଦେଖି ମନେହୁଏ ନିମ୍ନ ସ୍ତରର ଲୋକ ।

ଅଗଣି—

ରାଜା ସୂର୍ଯ୍ୟଭାନୁଙ୍କ ଅତୀତର ଘୁମାସ୍ତା 'ସନାତନ'ର ଚାକର । ଆଜି ସନାତନ ଅର୍ଥ ଓ ବ୍ୟବସାୟ ବୁଦ୍ଧି ନେଇ ମସ୍ତ ବଡ଼ଲୋକ । ନୂଆ ନୂଆ ରାଜମାତରେ ପଶିଛୁ ବୋଲି ମନରେ କାହିଁରେ କ'ଣ ଗର୍ବ । ତା' ଚାକର ଅଗଣି ମଧ୍ୟ ମଣିଷ ମାନୁନାହିଁ ।

ଜେମ୍‌ସ୍‌—

ଜଣେ ଶିକ୍ଷିତ, ରୁଚିବାନ୍‌ ଆମେରିକାନ୍‌ ଯୁବକ । କିନ୍ତୁ ନିଜ ଦେଶ ଓ ସମାଜର ସଂସ୍କୃତିରେ ବିମୁଖ ହୋଇ ଭାରତକୁ ଚାଲି ଆସିଛନ୍ତି । ଭାରତୀୟ ଭାଷା ଓ ସଂସ୍କୃତି ଅଧ୍ୟୟନ କରିବା ସଙ୍ଗେସଙ୍ଗେ ଭାରତୀୟ ଜୀବନ-ଦର୍ଶନ ପ୍ରତି ଗଭୀରଭାବେ ଆକୃଷ୍ଟ ହୋଇ ପଡ଼ିଛନ୍ତି ।

ବି. ଦ୍ର.—

ପ୍ରତ୍ୟେକ ଚରିତ୍ରର ସାଜସଜ୍ଜା ଓ ପୋଷାକ ପରିଚ୍ଛଦ ନିର୍ଦ୍ଦେଶକ ନିଜେ ନିଜେ ବିଚାର କରି ସ୍ଥିର କରିନେବେ । ନାଟକଟି କ୍ଲାସିକ-ଧର୍ମୀ ହୋଇ-ଥିବାରୁ ପ୍ରତି ଚରିତ୍ରକୁ ଯଥାଯଥ ଭାବେ ରୂପାୟିତ କରିବା ଅଭିନେତା, ଅଭିନେତ୍ରି, ନିର୍ଦ୍ଦେଶକ ଓ ପ୍ରଯୋଜକଙ୍କର କର୍ତ୍ତବ୍ୟ । ଆଶାକରେ ସମଗ୍ର ନାଟକର ତ୍ରୁଟିଶୂନ୍ୟ ପରିବେଷଣ ଦିଗରେ ସେମାନେ ସଜାଗ ରହିବେ ।



# ନାଟକର ମଂଚ ସଜ୍ଜା

ଏଇ ନାଟକର ମଞ୍ଚ ଶୈଳୀ ଦର୍ଶକମାନଙ୍କପାଇଁ ଆକର୍ଷଣୀୟ ଏବଂ ବୈଚିତ୍ର୍ୟମୟ । ତେଣୁ ସେହି ଶୈଳୀ ନେଇ ପ୍ରଯୋଜକ ଓ ନିର୍ଦ୍ଦେଶକଙ୍କୁ ପରିଚିତ କରାଇବା ମୋର ପ୍ରଥମ କର୍ତ୍ତବ୍ୟ । ଏହି ମଞ୍ଚଶୈଳୀ ଓଡ଼ିଶାରେ ଏହି ନାଟକରେ ପ୍ରଥମଥର ପାଇଁ ବ୍ୟବହୃତ ହୋଇଥିବା ଉଲ୍ଲେଖଯୋଗ୍ୟ ।

**ମଞ୍ଚଶୈଳୀ :**

ସମଗ୍ର ନାଟକଟି ପାଞ୍ଚଟି ନିର୍ଦ୍ଦିଷ୍ଟ ଦୃଶ୍ୟାଞ୍ଚଳରେ ଅଭିନୀତ ହେବ । ପ୍ରତ୍ୟେକ ଦୃଶ୍ୟାଞ୍ଚଳ ସ୍ୱକୀୟ ସାଜସଜ୍ଜା ନେଇ ସ୍ୱୟଂ-ସମ୍ପୂର୍ଣ୍ଣ । ଆଲୋକ ପରିଚାଳନାର ଯାଦୁକରୀ ପ୍ରଭାବରେ ପ୍ରତ୍ୟେକ ଦୃଶ୍ୟାଞ୍ଚଳ ଯଥା ସମୟରେ ଆଲୋକିତ ଓ ଅନ୍ଧକାର ହେବ ।

**ପ୍ରଥମ ଦୃଶ୍ୟାଂଚଳ :**

ଗଣିକା ବସ୍ତିକୁ ଯାଉଥିବା କେଶରବାଈ ଗଳି (Lane) । ଏଇ ଗଳିରେ ପାନ ଦୋକାନ, ଫୁଲ ଦୋକାନ, ଅତର ଦୋକାନ ଓ ମଦ ଦୋକାନ ରହିବ । ଦୋକାନରେ ବିକ୍ରେତା ମାନେ ରହିବେ । ନାଟକ ମଞ୍ଚସ୍ଥ ହେବାର ସମଗ୍ର ସମୟକାଳ ମଧ୍ୟରେ ଦୋକାନରେ ବିକି-ବ୍ୟବସାୟ ଚାଲିଥିବ । ଗରାଖ ମାନଙ୍କ ଯିବା-ଆସିବା ମଧ୍ୟ ଲାଗି ରହିଥିବ । ମ୍ୟୁନିସିପାଲିଟି ବତୀ ଖୁଣ୍ଟର ଆଲୋକରେ ଗଳିଟି ଆଲୋକିତ ।

**ଦ୍ୱିତୀୟ ଦୃଶ୍ୟାଂଚଳ :**

ଗଣିକା ନୟନାବାଈର ବାହାର ଜଲସାଘର । ଏହାର ସାଜସଜ୍ଜା ପାରମ୍ପରିକ ଗଣିକା ଗୃହର ସମସ୍ତ ଉପକରଣ ।

**ତୃତୀୟ ଦୃଶ୍ୟାଂଚଳ :**

ଏହା ଗଣିକା ନୟନାବାଈର ଅନ୍ଦର-ମହଲ । ଏହା ଭିତରେ ମଧ୍ୟ-ଯୁଗୀୟ ପଲଙ୍କ, ଦୀପଦାନୀ, ଧୂପ, ଅତର, ଫୁଲ, ନଗ୍ନ-ମୂର୍ତ୍ତି, କାମ-ବନ୍ଧର ଚିତ୍ର ଇତ୍ୟାଦି ।

ଚତୁର୍ଥ ଦୃଶ୍ୟାଂଚଳ :

ଏହା ନୟନାବାଈର ଗୃହ-ସଂଲଗ୍ନ ଉଦ୍ୟାନ । ଖୋଲା ଆକାଶ ତଳେ ଅନେକ ଫୁଲଗଛର ସମାବେଶ । ମଝିରେ ମାର୍ବଲର ନଗ୍ନ ନାରୀମୂର୍ତ୍ତି । ବସିବା ପାଇଁ ଗୋଟିଏ ପଥର ଅସ୍ଥାନ । ପଛପଟେ ଆକାଶ—ଯେଉଁଠି ସଞ୍ଜ ସକାଳ ହୁଏ, ସୂର୍ଯ୍ୟ-ଚନ୍ଦ୍ର ଉଠେ, ତାଆର ଫୁଲ ଫୁଟେ ।

ପଞ୍ଚମ ଦୃଶ୍ୟାଂଚଳ :

ଏହା ସହରର ଉପାନ୍ତରେ ଥିବା ରାଜା ସୂର୍ଯ୍ୟଭାନୁଙ୍କର ଅନ୍ଧକାର ଭଗ୍ନ-ଜୀର୍ଣ୍ଣ ରାଜପ୍ରାସାଦର ଭିତର ଅଂଶ । ପୁରୁଣା ସ୍ଥାପତ୍ୟ ଓ ଆସବାବପତ୍ର ଇତ୍ୟାଦି ନେଇ ଏକ ଅତୀତ ଅଭିଜାତ୍ୟର ପରିଚୟ ବହନ କରେ ।

ବି. ଦ୍ର.— ଏଇ ନାଟକରେ ଯବନିକା ଆଦୌ ରହିବ ନାହିଁ । ଆଲୋକ ସଂପାତର ବିଶେଷ ଶୈଳୀରେ ଗୋଟିକ ପରେ ଗୋଟିଏ ଦୃଶ୍ୟାଂଚଳ ଆଲୋକିତ ଓ ଅନ୍ଧକାର ହୋଇ ଦର୍ଶକ ମାନଙ୍କ ମଞ୍ଚର ବିଭିନ୍ନ ଅଂଶ ପ୍ରତି ଦୃଷ୍ଟି ଆକର୍ଷଣ କରାଉଥିବ । ନିର୍ଦ୍ଦେଶକ ଓ ପ୍ରଯୋଜକ ବିଶେଷ ଭାବେ ସତର୍କ ରହିବେ ଯେ, ପ୍ରତ୍ୟେକ ଅଭିନେତା ଅଭିନେତ୍ରୀ ତାଙ୍କ ସଳାପ ମୁଖସ୍ଥ କରିବେ । କାରଣ ଏଇ ଧରଣର ମଞ୍ଚ ଶୈଳୀରେ ସ୍ମାରକର ଭୂମିକା ଆଦୌ ନାହିଁ ।

# କୃତଜ୍ଞତା

## ମୋର ଏହି ଶୁଭେଚ୍ଛୁ ମାନଙ୍କୁ

ଡକ୍ଟର ହରେକୃଷ୍ଣ ମହତାବ ।
ପ୍ରଫେସର ଡକ୍ଟର ମନ୍ମଥ କୁମାର ମହାପାତ୍ର ।
ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ।
ଉତ୍କଳ-ବାଚସ୍ପତି ଶ୍ରୀ ଗୌରୀ କୁମାର ବ୍ରହ୍ମା ।
ପଣ୍ଡିତ ବିଦ୍ୟାବିନୋଦ ସଦାଶିବ ରଥଶର୍ମା ।
ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ ।
ଶ୍ରୀଯୁକ୍ତ ରାଜକିଶୋର ରାୟ ।
ଶ୍ରୀ ଗୋବିନ୍ଦ ମିଶ୍ର ।
ଆଡ଼ଭୋକେଟ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ ।
,, ବିଶ୍ୱେଶ୍ୱର ମିଶ୍ର ।
ଶ୍ରୀଯୁକ୍ତ ସମରେନ୍ଦ୍ର ମହାପାତ୍ର ।
ଶ୍ରୀଯୁକ୍ତ ଗୋପାଳ ମହାପାତ୍ର ।
ପ୍ରଫେସର ଡାକ୍ତର ଗଙ୍ଗାଧର ବେହେରା ।
,, ,, ଆକୁଳାନନ୍ଦ ଷଡଙ୍ଗୀ ।
,, ,, ଶ୍ରୀକାନ୍ତ ଦାସ ।
,, ,, ସନାତନ ରଥ ।
,, ,, ରାଜକିଶୋର ପଣ୍ଡା ।
ସହକାରୀ ପ୍ରଫେସର ଡା: ବିଭୂତି ରାୟ ।
,, ,, ଡା: ଟନ୍‌ପେ ।
,, ,, ଡା: ବିଜୟଲକ୍ଷ୍ମୀ ନାୟକ ।
,, ,, ଡା: ନାରାୟଣ ନନ୍ଦ ।
ଔପନ୍ୟାସିକ ମହାପାତ୍ର ନୀଳାଦ୍ରି କୁମାର ଓ ସୁଷମା ଦେବୀ ।
ଶ୍ରୀ ପରମାନନ୍ଦ ଅଧିକାରୀ ଓ ଶ୍ରୀମତୀ କଳାବତୀ ଦେବୀ ।
ଶ୍ରୀ ମୁରାରୀ ମୋହନ ଜେନା ଓ ଶ୍ରୀମତୀ ଜେନା ।
ଶ୍ରୀଯୁକ୍ତ ବିଦେହାନନ୍ଦ କର । ସଭାପତି, ଉତ୍କଳ ସାହିତ୍ୟ ସମାଜ ଓ
ସଂପାଦକ ମାତୃଭୂମି ।

ଶ୍ରୀଯୁକ୍ତ ବିଶ୍ୱନାଥ ମହାପାତ୍ର O. A. S.
ଶ୍ରୀ ହେମେନ୍ ଦାସ ।
ଶ୍ରୀ ଆନନ୍ଦ ଶଂକର ଦାସ । (ନାଟ୍ୟକାର)
ଶ୍ରୀ ନବଘନ ଜେନା ଓ ଶ୍ରୀମତୀ ଜେନା ।
ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା, ସଭାପତି 'ନୀଳଚକ୍ର' ଓ 'ନୀଳଚକ୍ର'ର କର୍ମକର୍ତ୍ତାଗଣ ।
ଶ୍ରୀ ଟୁଲୁ ମିଶ୍ର । ବମ୍ବେ ଫଟୋ ଷ୍ଟୁଡ଼ିଓ, ରାଣୀହାଟ କଟକ ।
ଅଧ୍ୟାପକ ପକ୍ଷୀଶ୍ୱିତ ନନ୍ଦ ।
,, ଖଗେନ୍ଦ୍ର ମଲ୍ଲିକ ।
ଆଡ଼ଭୋକେଟ ପୁରଞ୍ଜନ ରାୟ ।
ଅଧ୍ୟାପିକା ଶ୍ରୀମତୀ ଅଲକା ରାୟ ।
ଶ୍ରୀ ବିଜୟଶଙ୍କର ପାତ୍ର ।
ଶ୍ରୀ ଅସିତ ମୁଖାର୍ଜି ।
ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ନାଟ୍ୟ ସଂସଦ ।
'ନୀଳଚକ୍ର' ଶାଖା ରାଉରକେଲା ଓ ତାର କର୍ମକର୍ତ୍ତା ବୃନ୍ଦ ।
ହାଉସ୍ ସର୍ଜନ ଡା: ବସନ୍ତ ମହାପାତ୍ର ।
,, ,, ଡା: ଶ୍ରୀକୁମାର ମହାନ୍ତ ।
,, ,, ଡା: ଆର୍ଯ୍ୟ ମିଶ୍ର ।
P. G. ଛାତ୍ର ଡା: ମଙ୍ଗୁଆଳ
ଓ
ଲେଖକ ନାଟ୍ୟକାର ନୃସିଂହ ସାହୁ ।

ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟର
ଛାତ୍ର ସଂସଦ ତରଫରୁ ବାର୍ଷିକ ନାଟକ ଉତ୍ସବରେ
ପରିବେଷିତ ପରୀକ୍ଷାମୂଳକ ନାଟକ

# ଶୃଙ୍ଗାର-ଶତକ

ତେର, ଚଉଦ, ପନ୍ଦର—ଅପ୍ରେଲ ୧୯୭୯ (ବିଷୁବ ସଂକ୍ରାନ୍ତି)

ଉତ୍ସବର ସମ୍ମାନିତ ଅତିଥି—**ମାନ୍ୟବର ଶ୍ରୀଯୁକ୍ତ ରବିରାୟ**
(କେନ୍ଦ୍ର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ)

ରଚନା :—ଡା: ବସନ୍ତ ମହାପାତ୍ର
ପ୍ରଯୋଜନା—ଦିଲ୍ଲୀପ ସାମଲ (ସମ୍ପାଦକ ନାଟ୍ୟ ସଂସଦ ୧୯୭୯)
ଆଲୋକ ଓ ମଞ୍ଚଶୈଳୀ—ପ୍ରସନ୍ନ ମହାନ୍ତି (ଟେଲିଭିଜନ)
ଶବ୍ଦ ଧ୍ୱନି—ରେଡ଼ିଓ ଲାଇଟ୍ (କଟକ)
ନୃତ୍ୟ—ଗୁରୁ ଶ୍ରୀ ରଘୁନାଥ ଦତ୍ତ (କଳାବିକାଶ କେନ୍ଦ୍ର)
ସଂଗୀତ ପରିଚାଳନା—ବିଶ୍ୱନାଥ ରାଉ (ଅଧ୍ୟକ୍ଷ କଳାବିକାଶ କେନ୍ଦ୍ର)
ନାଟ୍ୟ ସଂସଦ ସଭାପତି—ଅଧ୍ୟକ୍ଷ, ପ୍ରଫେସର ମଧୁସୂଦନ ଝାଡ଼ଙ୍ଗୀ
(ଏଫ୍. ଆର୍. ସି. ଏସ୍.)
ନାଟ୍ୟ ସଂସଦ ଉପସଭାପତି—ଡା: ନଟକିଶୋର ଦାସ
ନିର୍ଦ୍ଦେଶନା—ଶ୍ରୀ ପ୍ରଫୁଲ୍ଲ ମହାନ୍ତି (ଟେଲିଭିଜନ)

# ପ୍ରଥମ ଦୃଶ୍ୟାଂଚଳ

ସମସ୍ତ ସନ୍ଧ୍ୟା । କେଶରବାଈ ଲେନ୍‌ଟି ଧୀରେ ଧୀରେ ଆଲୋକିତ ହେଉଥିବାର ଦେଖାଯାଏ । ତା' ସହିତ ଶୁଣାଯାଏ ପୃଷ୍ଠଭୂମିରୁ ଘୋଷଣା ।

ପୃଷ୍ଠଭୂମି ଘୋଷଣା ॥ ଏଇଟା ହେଉଛି ଏଇ ପୁରୁଣା ସହରର ସବୁଠୁ ପୁରୁଣା ଗଣିକା ବସ୍ତି । ଲୋକେ ତାକୁ କହନ୍ତି କେଶରବାଈ ଲେନ୍ । କେଶରବାଈ ନାମ୍ନୀ ଗଣିକା କେବେ ଏଇଠି ଗଣିକା ବ୍ୟବସାୟ ଆରମ୍ଭ କରିଥିଲା, ସେ କଥା କେହି କହି ପାରିବେ ନାହିଁ । ଆଜି, ଏତେ ଦିନ ପରେ ମଧ୍ୟ ଅଂଚଳଟି ତା'ର ନାମ ବହନ କରିଚି ।

ଦିନରେ ଏ ଗଳିଟାକୁ କେହି ଅନାନ୍ତି ନାହିଁ । କିନ୍ତୁ ସଂଜ ହେଲେ ସେ ଗଳିର ଅସଲ ରୂପ ଜଣାପଡ଼େ ।

[ ମ୍ୟୁନିସିପାଲିଟି ବତିଖୁଣ୍ଟର ଅଲୋକ ଧୀରେ ଧୀରେ ଜଳି ଉଠି ଗଳିଟିକୁ ଆଲୋକିତ କରେ । ଗଳିର ବିଭିନ୍ନ ଦୋକାନରେ ଗରାଖମାନଙ୍କ ଭିଡ଼ ଜମି ଉଠେ, ଯିବା ଅସିବା ମଧ୍ୟ ଚାଲିଥାଏ ]

ପୃଷ୍ଠଭୂମି ଘୋଷଣା ॥ ସଞ୍ଜ ହେଲେ ଗଳିମୁଣ୍ଡରେ ଛିଡ଼ା ହୁଅନ୍ତି ଫୁଲବାଲି ବଇଁଶୀ,
ପାନବାଲା ମଦନା,
ଅତରବାଲା ଗୁଲ୍‌ଜାର୍
ଆଉ
ମଦ-ଦୋକାନୀ ପାଣ୍ଡେ ।

ପୃଷ୍ଠଭୂମି ଘୋଷଣା ।। ଗଳ ଭିତରକୁ ଯାଉଥିବା ପ୍ରତ୍ୟେକ ଗର୍ଦ୍ଦଙ୍କୁ ସେମାନେ
ବାନ୍ଧ ରଖନ୍ତି କିଛି ସମୟ ପାଇଁ ।

କିଏ ଫୁଲ କିଣେ,
କିଏ କିଣେ ଅତର
କେହି ପାନ କିଣେ
କିଏ ବା ମଦର ବଗ୍‌ଦ୍ ଢାଏ ।

ସେଇମାନଙ୍କ ପାଖ ଗୁଣ୍ଡ, ଗହଳ, ଚହଳ, ଭିତରେ
କାନ୍ଦୁ ବାର ହୋଇପଡ଼େ—ଦଲାଲ୍ "ଲଲ୍ଲୁ" ।

[ କେଶରବାଈ ଗଳର ଦଲାଲ୍ "ଲଲ୍ଲୁ" । ଅଭିଜାତ
ଲକ୍ଷ୍ନୌ ପରିଧାନରେ ଛୁଡ଼ା ହୋଇ ଆଗେଇ ଆସେ, ଆଉ
କହେ...... ]

ଲଲ୍ଲୁ ।। ହାଁ । ଜୀ ମୈଁ ହୁଁ ଲଲ୍ଲୁ । ଆପ୍ ସବ୍ ମେରେ ମେହେମାନ୍ ହୋ ।
କ୍ୟା ଚାହିୟେ ଆପକୋ ? ନାଚ୍, ଗାନା ୟା ଶଡ଼ୀୟା ???
ଆରେ ବାବୁଜୀ, ସରମାନେକା ବାତ୍ କ୍ୟା ହୈ ? ଆପକୋ ପହିଲେ
ଗାନା ପସନ୍ଦ ହୈ ନା ? ଖେୟାଲ୍, ଠୁମରି, ଗଜଲ୍— ଠିକ୍ ହୈ,
ତୋ ଆଇୟେ ମେରାସାଥ୍—ଆଇୟେ'ନା—ଦେଖିୟେ ୟେ
ହୈ.........

[ ଲଲ୍ଲୁ ସତେ ଯେପରି ସ୍ୱାଗତ କରନ୍ତିଏ ଦର୍ଶକମାନଙ୍କୁ
କଣ୍ଠନାବାଈର ଜଲସାଘରକୁ ]

# ଦ୍ୱିତୀୟ ଦୃଶ୍ୟାଂଚଳ

ନୟନାବାଈର ଆସର ଘର । ଉପରେ ଦାମୀ କାଚର ଝାଡ଼ । ତଳେ ପାର୍ସିଆନ ଗାଲିଚ୍ଚ । ମୋଟା ନରମ ଗଦି । ଗୋଲ ତକିଆ । ନଗ୍ନ କାମଦେବର ମୂର୍ତ୍ତି । ଫୁଲର ମହକ, ଅତରର ଗନ୍ଧ, ତମ୍ବୁରୀ, ତବଲା, ସାରେଙ୍ଗୀ, ତାନପୁରାର ଆର୍ଟ୍ବାଜ । ପର୍ଯ୍ୟାୟକ୍ରମେ ପ୍ରଥମ ଦୃଶ୍ୟାଂଚଳର ଆଲୋକ ଲିଭିଯାଏ ଏବଂ ଲକ୍ଷ୍ମି କ୍ରମେ ଆଲୋକିତ ହୋଇଥିବା ଦ୍ୱିତୀୟ ଦୃଶ୍ୟାଂଚଳରେ ପ୍ରବେଶ କରେ । ଦର୍ଶକମାନଙ୍କ ଦୃଷ୍ଟି ମଧ୍ୟ ଦ୍ୱିତୀୟ ଦୃଶ୍ୟାଂଚଳ ପ୍ରତି ଆକର୍ଷିତ ହୋଇଯାଏ । ଦ୍ୱିତୀୟ ଦୃଶ୍ୟାଂଚଳର କେନ୍ଦ୍ରବିନ୍ଦୁରେ ନୟନାବାଈ କ୍ଲାସିକାଲ ଗୀତ ଗାଉଥାଏ, ତାନପୁରା ହାତରେ । ତାକୁ ଘେରି ଅନେକ ପ୍ରୌଢ଼ ଦର୍ଶକ ମଣ୍ଡଳୀ । ଆଗରେ ଥୁଆ ହୋଇଥିବା ରୂପା ଥାଳୀରେ ଟଙ୍କା ପକାଉଥାନ୍ତି ଦର୍ଶକମାନେ । ଯୁବକମାନେ ବିରକ୍ତ ହୋଇ ଉଠି ଯାଉଥାଆନ୍ତି ।

ଲକ୍ଷ୍ମୁ ॥ (ଖୁବ୍ ଉତ୍ସାହରେ) ଦେଖିଯେ ଜୀ ଯେ ହେ ନୟନାବାଈଙ୍କ ଆସର । ସୁର-ଶିଙ୍ଗାର ନୟନାବାଈ ଜବ୍ ଆଲାପ କରତୀ ହେ—ସାରି ଦୁନିଆଁ ରୁକ୍ ଯାତା ହେ । ଆପ୍ ଭି ରୁକ୍ ଯାଇୟେ । ଶୁନିୟେ ଦରବାରୀ କି ୟେ ଆଲାପ ।

[ ଦରବାରୀ ରାଗର ଆଲାପ ଦ୍ରୁତ ଲୟରେ ଚାଲିଥାଏ । ପଶ୍ଚାତ୍ପଟରୁ ବାହାରି "ପାଠ" ଦର୍ଶକମାନଙ୍କ ଧ୍ୟାନ ଆକର୍ଷଣ କରିବା ପାଇଁ ବଢ଼ାଇ ଦେଉଥାଏ ଏବଂ ସେମାନଙ୍କ ଉପରେ ସୁବାସିତ ଅତର ଛିଞ୍ଚି ଦେଉଥାଏ । କ୍ରମେ ଦେଖାଗଲା ଦର୍ଶକମାନେ

ତାଳି ଦେଇ, ନୟନାବାଈଙ୍କୁ ଉତ୍ସାହିତ କରି ଚାଲିଗଲେ । ଲଚ୍ଛୁ ଥାଳିରେ ପଡ଼ିଥିବା ସାମାନ୍ୟ ଟଙ୍କା ଦେଖି ବିରକ୍ତିରେ କହି ଉଠିଲା— ]

ଲଚ୍ଛୁ ।। ଗା, ଗା, ଗଲ୍ଲା ଫାଡ଼କେ ଗା ! ରୋଜ୍ ଦୋ ଚାର୍‌ଘଣ୍ଟା ନ ଗାଇଲେ କଣ ତୋ ସାଧ ମେଣ୍ଟିବ ?

[ ହଠାତ୍ ଗୀତର ସ୍ୱପ୍ନ ରାଇଜରୁ ଫେରି ଆସିଲା ନୟନାବାଈ ]

ନୟନା ।। କଣ ହେଲା ଲଚ୍ଛୁ ?

ଲଚ୍ଛୁ ।। (ବିରକ୍ତିରେ) ଆରେ ନୟନାବାଈ, ହୋ ଗା କ୍ୟା ? ଦେଖୋ ଥାଳୀ ମେଁ ସିର୍‌ଫ୍ ପଚାଶ ରୁପିୟା— [ଥାଳୀରୁ ଟଙ୍କା ଗଣି ତାଚ୍ଛଲରେ ପୁଣି ଥାଳିରେ ପକାଇ ଦେଲା ]

ନୟନା ।। ଠିକ୍ ଅଛି, ତୋ କମିଶନ ତୁ ନେଇଯା—

ଲଚ୍ଛୁ ।। ମୋ କମିଶନ୍ ତୁ ତ ହର୍‌ରୋଜ୍ ଦଉଚୁ— ଲେକିନ୍ ତୁମ୍ହେ ମିଲ୍‌ତା ହୈ କ୍ୟା ?

ନୟନା ।। ମୋର ଯାହା ମିଳିବା କଥା, ମିଳି ଯାଉଚି ଲଚ୍ଛୁ ।

ଲଚ୍ଛୁ ।। କ୍ୟା ମିଲ୍‌ତା ତେରେକୋ ?

ନୟନା ।। ତୁ ଅଜିଯାଏ ମୋତେ ଚହ୍ନିଲୁ ନାହିଁ ଲଚ୍ଛୁ ?

ଲଚ୍ଛୁ ।। ସାରା ବସ୍ତି ଭିତରେ ତୋତେ ଚହ୍ନିଚି ବୋଲି ତ, କହୁଚି ନୟନା-ବାଈ ଆଉ କେତେଦିନ ଇମିତି ଧ୍ରୁପଦ, ଖେୟାଲ ଗାଇ ଲୋକଙ୍କୁ ଠକିବୁ ?

ନୟନା ।। ମୁଁ ଠକୁଚି ?

ଲଚ୍ଛୁ ।। ହଁ ଠକୁଚୁ । ଠକୁଚୁ ନିଜକୁ ।

ନୟନା ।। ନିଜକୁ !!!

ଲଚ୍ଛୁ ।। ହଁ, ସେ ଦିନ ଯାଇଚି ନୟନାବାଈ । ରୋଜ୍ ଶାମ୍ ହେଲେ ଏଠି ଯୋଉ ଭିଡ଼ ହୁଏ, ଏଇ ଆଖି ଦେଖିଚି । ରଜା, ଜମିଦାର, ସୁବେଦାର—କେତେ ପାଲିଙ୍କି, ସୁଆରି, ଘୋଡ଼ାଗାଡ଼ି— ଭରପୁର ଗହଳି, । ଅତର ମହ୍ଲିହାର ବତେଇ ହେଇଯାଏ । ଗଜଲ୍ ଠୁମ୍‌ରି କଥକ ନେଇ ରାତି ପାହିଯାଏ । ଆଉ ରୁପିୟା ? କିଏ ପଚାରେ ?

ନୟନା ॥ ସବୁଦିନେ କାହାର ସମାନ ନ ଥାଏ ଲଲ୍ଲୁ ।

ଲଲ୍ଲୁ ॥ ବିଲ୍‌କୁଲ୍ ଠିକ୍ କହୁଚୁ ନୟନାବାଈ, ଦୁନିଆଁରେ ସବ୍‌କୁଛ ବଦଲି ଯାଉଛି । ଲେକିନ୍ ତୋର ଯେ କିଛି ବଦଳୁ ନାହିଁ ? ଆଜିକାଲି ଯୋଉ ଗରାଖ ଆସୁଚନ୍ତି, ସେମାନେ ତୋର ଧ୍ରୁପଦ୍, ଖେୟାଲ୍ କଣ ବୁଝିବେ ? ଶାଲା ଘଣ୍ଟା ଧରି ବସିବେ, ଆଉ ଗଲାବେଳକୁ ଦେବେ ଟଙ୍କାଏ, ଦି' ଟଙ୍କା !

ନୟନା ॥ ଆସର ଉପରେ ମତେ ଯଦି କେହି ଫୁଲଟାଏ ବଢ଼େଇ ଦିଏ—ସେଇ ମୋର ଲକ୍ଷେ ଟଙ୍କା ।

ଲଲ୍ଲୁ ॥ ବକ୍‌ବାଜ୍ କରନା ନୟନାବାଈ । ମୁଜରା ଉପରେ ଫୁଲ ବଢ଼େଇ-ଦବା ଲୋକ ଆଉ ନାହାନ୍ତି । ଶଲା ସବ୍ କଞ୍ଜୁସ୍ । ସେଇଥିପାଇଁ କହୁଚି, ତୁ ବନ୍ଦକର ତୋର ଏଇ ବେହୁଦାଖିଆ ଖରଚ୍ ।

ନୟନା ॥ ତୁ ତ ଜାଣିଚୁ ଲଲ୍ଲୁ ଆମ ଘରର ବୁନିଆଦ ।

ଲଲ୍ଲୁ ॥ ଜାଣିଚି ନୟନାବାଈ, ଜାଣିଚି ! ଏଇ ଗଳାଟା ଯାହା ନାଁରେ ସିଏ ତୋର ମାଆ—

ନୟନା ॥ ମୁଁ ତ ତାକୁ ଦେଖିନି ଲଲ୍ଲୁ, ଶୁଣିଚି ସିଏ ଆସିଥିଲା ଲକ୍ଷ୍ନୌରୁ । ମଧୁପୁର ରାଜାଙ୍କର ମନ କିଣି ନେଇଥିଲା ଲକ୍ଷ୍ନୌର ସେଇ ଗୋଲାପ । ସେ ଥିଲା କଥକ ଆଉ ଧ୍ରୁପଦ୍ ଜଗତର ରାଣୀ । ରାଜାସାହେବ ତାକୁ ନେଇ ଆସିଲେ । ମକାନ୍ ଦେଲେ, ବାଗ, ବଗିଚା ବି ଦେଲେ । ବସ୍ତି ବସେଇଲେ ତା' ପାଇଁ । ନିଇତି ସଞ୍ଜରେ ସେ ଟାମ୍‌ଯାନ୍ ନେଇ ଆସୁଥିଲେ 'କେଶରବାଈ'ର କୋଠିକୁ । ସାରା ରାତି କଟୁଥିଲା ନାଚ ଗୀତରେ । କେତେ ରାଜା, ଦେଓ୍ୱାନ ତାକୁ ଚାହିଁଥିଲେ ରାଣୀ କରି ନବାକୁ । ହେଲେ ସିଏ ତା' କୋଠି, ତା ବସ୍ତି ଛାଡ଼ି କୁଆଡ଼େ ଗଲାନାଇଁ ।

ଲଲ୍ଲୁ ॥ ସେ ସବ୍ ପିଚ୍ଛୁଲା ଦିନର କଥା । ତୋ ମୁଣ୍ଡରେ ବସା ବାନ୍ଧିଚି ଖାନଦାନୀ ବୁନିଆଦର ସେଇ ଭୂତଟା । ଏବେ ରାଜା, ମହାରାଜା, ରାୟ ବାହାଦୂର ସବୁ ଗଲେଣି । ତାଙ୍କ କୋଠି, ଖାନଦାନୀ ବି ମାଟିରେ ମିଶିଲାଣି । ତୋର ଏଇ ବୁନିଆଦ ନେଇ ତ ଆଉ କେତେଦିନ ରହିବୁ ? କାଲି ସାରେଙ୍ଗୀବାଲା ମିଆଁ ମତେ କହୁଥିଲା ସେ ଆଉ ଆସିବନି । ତା'ର କେତେ ଟଙ୍କା ବାକି ହେଲାଣି । ଏଇ କଥା

ଦିନେ ତବଲା-ବାଲା, ପାନବାଲା ବି କହିବେ । ଫୁଲ୍‌ବାଲ୍ ଆସି ତୋ ଦୁଆରେ ଜୁଲମ୍ କରିବ । ସେମାନଙ୍କର ଦରକାର ନଗଦ ଟଙ୍କା । ତୋର ଖାନଦାମୀ ନୁହେଁ ।

ନୟନା ॥ ମୋର ଗୋଟାଏ ଗହଣା ନେଇଯା ଲକ୍ଷ୍ମୀ । ତାକୁ ବିକି ସେମାନଙ୍କ ପାଉଣା ସବୁ ତୁଟେଇ ଦେ ।

ଲକ୍ଷ୍ମୀ ॥ ଏମିତି ପାଉଣା ତୁଟିଉ ତୁଟିଉ—ତୋର ସବୁ ଗହଣା ଦିନେ ଖତମ୍ ହୋଇଯିବ ନୟନାବାଈ । ଦିନେ ତୁ କରଜ କରିବୁ । ଆଉ ସେଇ କରଜ ସୁଝିବାକୁ ଯାଇ, ଏଇ ମକାନ ବି ନିଲାମ ହୋଇଯିବ ।

ନୟନା ॥ (ଆତଙ୍କରେ ଶିହରି ଉଠି) କଣ କହୁଚୁ ଲକ୍ଷ୍ମୀ ?

ଲକ୍ଷ୍ମୀ ॥ ସତ କହୁଚି ନୟନା ! (ନୟନାକୁ ଦର୍ପଣ ନିକଟକୁ ନେଇ ଲକ୍ଷ୍ମୀ ଜୋର ଦେଇ କହିଲା) ଦେଖ, ଦେଖିଲୁ, କଣ ଅଛି ତୋ ଦେହରେ ? କଣ ଅଛି ସେ ମୁହଁରେ ? ରଙ୍ଗମାଖି, ପାଟ ବନାରସୀ ପିନ୍ଧି ଖିବଚୁ ଉମର୍‌ଟାକୁ ବାନ୍ଧି ରଖିପାରିବୁ ? ଏଯୁଗ କଉ ନେହିଁ ହୋ ସକ୍‌ତା ହୈ ! କେଶରବାଈ ଏଇଠି ମରିଗଲେ, ଯମୁନାବାଈ ବି ଦିନେ ମଜଲି ଯାଇଥିଲି । ଆଉ ଆଜି ତୁ ବି ଶେଷ ହୋଇଯାଉଚୁ । ଆଉ ତୁ ନୁହେଁ । ଯଦି ଘରିନା ବଞ୍ଚେଇ ରଖିବୁ, ପିନ୍ଧେଇଦେ ଏଇ ନୂପୁର ତୋ ବେଟୀ ପାଦରେ ।

ନୟନା ॥ ବେଟୀ ? ଲବଣ୍ୟ ??? ସେ ତ ପିଲାଟା । ଠିକ୍ ତାଲିମ୍ ହୋଇନି ।

ଲକ୍ଷ୍ମୀ ॥ ପିଲା !!! ବୟସ ତା'ର ପନ୍ଦର ହେଲାଣି, ମାଲୁମ ଅଛି ?

ନୟନା ॥ (ହିସାବ କରି ମନେ ମନେ) ହଁ ପନ୍ଦର ହେଲା । ହେଲେ ସିଏ ତ ଏବେ ବି ଶୁଦ୍ଧ "ସରଗମ୍" ରିହାଜ୍ କରି ପାରୁନି । କଥକ୍ ନାଚରେ ତବଲା ଚଉଗୁଣକୁ ଉଠିଲେ ତା'ର ଗୋଡ଼ ରହି ଯାଉଚି । କେମିତି ତାକୁ ମୁଁ ମୁଜାରାରେ ଠିଆ କରେଇବି କହିଲୁ ?

ଲକ୍ଷ୍ମୀ ॥ ଲୋକେ ସରଗମ ଆଲାପ ଶୁଣିବେ ନାହିଁ, କି କଥକ ବୁଝିବେ ନାହିଁ । ଆଜିକାଲି ଗରାଖମାନେ ଖେଆଲ, ଦର୍‌ବାରୀ, ଧ୍ରୁପଦ ବୁଝନ୍ତି ନାହିଁ । ସେମାନେ ଖାଲି ଲବଣ୍ୟକୁ ଦେଖିବେ । ଅଉ ତୁ ଦେଖିବୁ ଟଙ୍କା, ଟଙ୍କା, ଟଙ୍କା......

[ ଦ୍ୱିତୀୟ ଦୃଶ୍ୟାଂଚଳ ଅନ୍ଧକାର ହେଲା । ସେଇ ଅନ୍ଧାର ଭିତରେ ଶୁଭିଲା କଥକ ନାଚର ବୋଲ୍ ସହିତ ତବଲା ଓ ନାଚର ନୂପୁରଧ୍ୱନି । ମଞ୍ଚ ଧୀରେ ଧୀରେ ଆଲୋକିତ ହେଲା ବେଳକୁ ନସ୍ୟନାବାଈର ଅସର ଘରେ ମୁଜରା ଚାଲିଛି । ନାଚୁଛି ଲବଣ୍ୟ ଅପୂର୍ବ ଭଙ୍ଗୀ ଓ ସାଜ ପୋଷାକରେ । ନସ୍ୟନାବାଈ ପଛରେ ବସି ପାନ ଖଙ୍ଗୁଛି ଓ ପାଟ ତାହା ନେଇ ପରବେକ୍ଷଣ କରୁଛି । ଚାରଆଡ଼େ ଦର୍ଶକମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା ଓ କରତାଳି । ଲବଣ୍ୟର ଗୋଡ଼ତଳେ ଟଙ୍କା ଅଜାଡ଼ି ହୋଇ ପଡ଼ୁଛି ]

( ମଞ୍ଚ ପୁଣି ଅନ୍ଧକାର ହୋଇଯାଏ ନାଚଗୀତ ସରିଲା ପରେ )

ପୁଣି ସେଇ ଦ୍ୱିତୀୟ ଦୃଶ୍ୟାଂଞ୍ଚଳଟି ଆଲୋକିତ ହୁଏ । ଲକ୍ଷ୍ମୁ ଖୁବ୍ ଖୁସିରେ ଟଙ୍କା ବଡ଼ାଏ ଧରି ପ୍ରବେଶ କରେ ବାହାରୁ । ପାଟିକରି ଡ଼ାକେ ପରିଚାରିକା "ପାଟ"କୁ । ନସ୍ୟନାବାଈର ଗଳାର ଆଳାପ ଶୁଣାଯାଏ ଅନ୍ଦର ମହଲରୁ । ଖୁବ୍ ସକାଳୁ ଉଠି ସେ ଲବଣ୍ୟକୁ ଆଳାପ ଶିଖାଉଛି । ଲବଣ୍ୟ ମଧ୍ୟ ତା ସହିତ ଗାଉଥିବାର ଶୁଣାଯାଏ ।

ଲକ୍ଷ୍ମୁ ।। (ଆନନ୍ଦରେ ଫାଟି ପଡ଼ି) ପାଟ, ଆଲୋ ପାଟ, ଶୁଣୁଛ ।

[ ପାଟ ଭିତରୁ ଆସିଲା ]

ପାଟ ।। ସକାଳୁ ତୋ ମୁହଁ ଚାହିଁଲି, ଦିନଟାଯାକ ଗଲା ।

ଲକ୍ଷ୍ମୁ ।। ଆଲୋ, ମୋ ମୁହଁ ଚାହିଁଲେ ଶୁଭ । ଆଜି ଶାନଦାର ଗରାଖମାନେ ଆସିବେ । ତତେ ମୋଟା ବକସିସ୍ ମିଳିବ ।

ପାଟ ।। ତୋର କଥାଗୁଡ଼ିକ ଖାଲି ଲମ୍ବା ଲମ୍ବା – କଣ ସକାଳୁ ସକାଳୁ 'ମାଲ' ପକେଇ ଦେଇ ଆସିଚୁ ?

ଲକ୍ଷ୍ମୁ ॥ ନା ଲୋ ପାଟ । ମାଲ ନୁହେଁ, ଢାଲ୍—ଢାଲ୍ ବହୁତ ଖୁସ୍ ଅଛୁ ।

ପାଟ ॥ କାହିଁକରେ ପୋଡ଼ାମୁହାଁ, କଣ ହେଇଚକି ?

ଲକ୍ଷ୍ମୁ ॥ ଆଲେ ନୟନାବାଈର ବେଟୀ 'ଲବଣ୍ୟ'କୁ ଦେଖି ସହରଯାକ ଲୋକେ ଯାହା କହୁଚନ୍ତି ନା –

ପାଟ ॥ ଉଟା ଖୁସାମଦିଆ ।

ଲକ୍ଷ୍ମୁ ॥ ତେରେ କସମ୍ ପାଟ । ଲୋକେ ଯାହା କହୁଚନ୍ତି ନା କଣ କହିବ ? ନୟନାବାଈ କହୁଥିଲା ଲାବଣ୍ୟକୁ ଗୀତ ନାଚ ଆସୁନି । ହେଲେ ମୁଁ ତାକୁ ଜୋର କରି ମୁଜ୍‌ରାରେ ଠିଆ କରେଇଲି । ଲୋକେ ଏବେ କଣ କହୁଚନ୍ତି ତୁ କାନେ ଶୁଣିବୁ ।

ପାଟ ॥ କଣ କହୁଚନ୍ତି ?

ଲକ୍ଷ୍ମୁ ॥ କହୁଚନ୍ତି ରୂପରେ 'ଲବଣ୍ୟ' ଆସ୍‌ମାନକା ତାରା ।

ପାଟ ॥ ସଚେ ?

[ ଅଲକ୍ଷ୍ୟରେ ନୟନାବାଈ ଅନ୍ଦରମହଲରୁ ଆସିଚ ଏବଂ ପାଟ ଓ ଲକ୍ଷ୍ମୁର ଫୁସ୍‌ଫାସ୍ କଥାବାର୍ତ୍ତା ଶୁଣୁଚି ]

ଲକ୍ଷ୍ମୁ ॥ ଆଉ ଗୀତ ନାଚରେ ଲାବଣ୍ୟ କମାଲ୍ । ଆଜି କେତେ ଗରାଖଙ୍କର ଆଉ୍‌ଭ୍ରନସ୍ ମିଳିଚି ଦେଖିଲୁ । (ଟଙ୍କା ଗଣି ପାଟକୁ ଦେଖେଇଲା)

ନୟନା ॥ ସତ କହୁଚୁ ? ଲୋକେ ସତରେ ଇମିତି ପ୍ରଶଂସା କରୁଚନ୍ତି ।

ଲକ୍ଷ୍ମୁ ॥ (ହଠାତ୍ ପଛଆଡ଼ୁ ନୟନା ପାଟିରେ ଚମକି) ତେରି କସମ୍ ନୟନାବାଈ, ତୋ ବେଟୀର ତାରଫ୍ ସାରା ସହରରେ ।

ନୟନା ॥ ମୁଁ କହିବ, ସେମାନଙ୍କର ଆଖି ନାହିଁ କି କାନ ନାହିଁ । ଗୀତ ନାଚ ସେମାନେ କଣ ବୁଝିବେ ?

ଲକ୍ଷ୍ମୁ ॥ (ଥଟ୍ଟା କରି) ଆଲେ ମୁଁ କହୁଚି—ତୋର ଆଖି କାନ ନାହିଁ ତୁ, ବୁଢ଼ୀ ହେଇ ଗଲୁଣି । ତୋ ଅଖିକି ଦିଶୁନି କି କାନକୁ ଶୁଭୁନି ।

ନୟନା ॥ (କୃତ୍ରିମ କ୍ରୋଧରେ ପଙ୍ଖାଟା ଧରି ଲକ୍ଷ୍ମୁକୁ ପିଟିଲା) କଣ କହିଲୁ ? (କୃତ୍ରିମ କ୍ରୋଧରେ ଲକ୍ଷ୍ମୁର କାନ ଧରି) କଣ କହିଲୁ ମୁଁ ବୁଢ଼ୀ ହେଇଗଲି······ଆରେ ମୁହଁ ବଡ଼ ଗଲାଣି ଦେଖୁଚି ।

ଲକ୍ଷ୍ମୁ ॥ ମୋର କସୁର ହେଇଚି, ମାଫ୍ କର······

—ଷୋହଳ—

(ଏତକ ବେଳେ ପ୍ରବେଶ କଲେ ପ୍ରୌଢ଼ ରସିକମୋହନ । ନୟନା ଓ ଲଛ୍ମିର ଉପରୋକ୍ତ ଦୃଶ୍ୟ ଉପଭୋଗ କରୁ କରୁ କହିଲେ)

ରସିକ ।। ଆଦରପର ଏଇ ମହାନ୍ ତୀର୍ଥରେ, ସାରରସ କାହିଁକି ସୁନୟନା ? କଣ ହେଇଚ ?

ସୁନୟନା ।। ଏଇ ଲଛ୍ମିଟାକୁ ମାଡ଼ ଦରକାର ।

ରସିକ ।। ଆସାମୀର ଅପରାଧ ?

ଲଛ୍ମି ।। ଆଜ୍ଞା ମୋର କିଛୁ ଅପରାଧ ନାହିଁ । ମୁଁ ଖାଲି ଏତକ କହୁଚ— "ନୟନାବାଈ, ତୁ ବୁଢ଼ୀ ହେଇ ଗଲୁଣି······

(ଲଛ୍ମିକୁ ଆଉ କହିବାକୁ ନ ଦେଇ, ରସିକ କୃତ୍ରିମ କ୍ରୋଧରେ ଗର୍ଜି ଉଠିଲେ)

ରସିକ ।। କଣ କହିଲୁ ? ସୁନୟନା ବୁଢ଼ୀ ହେଇଗଲାଣି !!! ହଇରେ ତୋ ମୁଣ୍ଡିକୁ କଣ ପିତ୍ତଚଢ଼ି ଗଲାଣିକି ? ଯା—ବାହାର ଏଠୁ ।

ଲଛ୍ମି ।। ନା ବାବୁ, ମୁଁ କଣ କହୁଥିଲିକି—

ରସିକ ।। ଚୁପ୍‌କର । ତୁ ଗୋଟାଏ ଚନବୁହା ବଳଦ । ଚନ୍ଦ୍ର ମିଠା କଣ୍ଟା ତୁ କଣ ବୁଝିବୁ ? ଯା—ବାହାର ଏଠୁ ।

(ଗୋଟାଏ ଧକ୍‌କା ଦେଇ ବାହାର କରିଦେଲେ)

ଲଛ୍ମି ।। କାନମୁଣ୍ଡ ଆଉଁସି ଚାଲିଗଲା ।

ରସିକ ।। ଆଲୋ ସୁନୟନା, ତୋର ପୁଣି ବୟସ ? ତୁ ତ ଚିରଦିନ ଷୋଡ଼ଶୀ, ରୂପସୀ, ଉର୍ବଶୀ ।

ନୟନା ।। ତମେ ଯେତିକି ବୁଢ଼ା ହଉଚ, ସେତିକି ରସରେ ଉଚ୍ଛୁଳୁଚ ।

ରସିକ ।। କଣ, ମିଛ କହିଲି ? ମୁଁ ତ ଏଇ ଘରକୁ ଅସୁଚ ତିରିଶି ବର୍ଷ ହେଇଗଲା । ସବୁଦିନେ ଦେଖୁଚ—ତୁ ଯାହାଥିଲୁ, ସେଇଆ ଅଛୁ । ସେଇ ଆଖି, ସେଇ ଓଠ, ସେଇ ହସ । ସତ କହୁଚଲୋ ସୁନୟନା 'ବୟସଟା ଯେମିତି ଦୌଡ଼ି ଦୌଡ଼ି ଥକ୍‌କା ହେଇ, ତୋର ଦୁଆରେ ଅଟକି ଯାଇଚ ?

ନୟନା ।। କଣ, ଆଜି ଟିକିଏ ମଦନାନନ୍ଦ ମୋଦକ ପଡ଼ିଚ କି ?

ରସିକ ।। (ଗଦ୍ ଗଦ୍ ହୋଇ) ଅଲେ, ତୋ ନଶା ଯାହାକୁ ଘାରିଚ, ତା'ର ଫେର୍ ମଦନାନନ୍ଦ କ'ଣ ଦରକାର ? (ଗୋଟିଏ ରସରସିଆ ଓଡ଼ିଶୀ ଗୀତ ଆରମ୍ଭ କରିଦେଲେ)

ନୟନା ।। (କୃତ୍ରିମ କ୍ରୋଧରେ) ଓହୋ, ସକାଳୁ ସକାଳୁ ଆସି ଗୀତ ଆରମ୍ଭ କରିଦେଲେ । ସତେ ଯେମିତି ମୁଁ ଜାଣ ନୟନ ପକେଇ ଡାକିଥିଲି ।

ରସିକ ।। ଅଲୋ ଗୁଡ଼ କଣ କେବେ ପିମ୍ପୁଡ଼ିକୁ ଡାକେ ? ପିମ୍ପୁଡ଼ି ପରା ନିଜେ ଆସି ମରେ······

ନୟନା ।। ତମକୁ ମରିବାକୁ କିଏ କହୁଥିଲା ?

ରସିକ ।। କହିବ ଆଉ କିଏ ? ମଧୁପୁର ଜମିଦାରଙ୍କ ଗୁମାସ୍ତା ହୋଇ ତାଙ୍କରି ସାଙ୍ଗରେ ଆସିଥିଲି ।

ନୟନା ।। ଆସିଲ ତ ଆସିଲ, ତଳକୁ ମୁହଁ କରି ବସିଥାଆନ୍ତ । ଅଦା ବେପାରୀ ହୋଇ ଜାହାଜ ମୂଲ କରୁଥିଲ କାହିଁକି ?

ରସିକ ।। ସେତିକି ଭୁଲ ତ କରିଚ, କି ଦୁର୍ଯୋଗରେ ତୋ ମୁହଁକୁ ଚାହିଁ-ଦେଲି ଯେ, ମରି ତ ଯାଇଚି । କପାଳ, ସୁନୟନା, କପାଳ । ଭୋଗିବାକୁ ମୋର ଦଶା ଅଛି । ପଡ଼ି ଯାଇଛି ଯେ, ଏକାବେଳେକେ ମାଙ୍କଡ଼ଚକ୍ର ।

ନୟନା ।। ଉଁଃ ଢଙ୍ଗ !!!

ରସିକ ।। ସତେତଲେ ସୁନୟନା, ତୋତେ ଦେଖିଲି ଦିନଠୁ ଅନ୍ନଜଳ ଯେମିତି ବିଷ । କୋଟ କଚରା ଯିମିତି ଚୁଲିପାଉଁଶ । କାକୁଡ଼ି କିଣିବାକୁ ଯାଇଁ ଭୁଲରେ ଯୋଉଦିନ 'ଲୁଣ' ନେଇ ଆସୁଚ, ପିତା ବୋଉ ଘରେ ଯୋଉ ପାଲା କରୁଚ, କିଏ କହିବ ? ପଡ଼ିଶା ଘରେ ଛତିରୀ ଟୋକାଏ ତା ପାଟି ଶୁଣି ଗାଇ ଉଠୁଛନ୍ତି "ଝରପ ରୁ ହେଲୁରେ········· ଖେଳା ଲେଳା ଝଞ୍ଜନାଖି କି ସାହସ କଲୁରେ ।"

(ରସିକଙ୍କ ଭାବଭଙ୍ଗୀ ଆଉ ଗୀତ ଶୁଣି, ନୟନା ହସି ହସି ଲୋଟିଗଲା)

---

[ସମୟ ସନ୍ଧ୍ୟା । ନୟନାବାଈଙ୍କର ଘର । ଭିତର ଘରୁ ନୃତ୍ୟବାଦ୍ୟର ନାଚର ତାଳ ଭାସି ଆସୁଚି । କେଶରବାଈ ଲେନ୍‌ର ଦୃଶ୍ୟାଞ୍ଚଳରେ ଲଛୁ ବଡ଼ ଖଣ୍ଡେ ଲଗାଇ, ଝୁବ୍ ଖୁସ୍‌ମିଜାସ୍‌ରେ ପଶି ଆସିଲା ଦାଣ୍ଡ ବୈଠକଖାନାକୁ ।]

ଲଛୁ ॥ ନୟନାବାଈ, ଏ ନୟନାବାଈ ।

(ଭିତରେ ନାଚ ଓ ନୟନାର ଗୀତ ହଠାତ୍ ବନ୍ଦ ହୋଇଗଲା)

ନୟନା ॥ (ଭିତରୁ) କିଏ ଲଛୁ, ରହ ଯାଉଚି । ଏ, ଝିଅ ତୁ ଏଇ ବୋଲ୍‌ଟା ଉଠେଇ ଦେ, ମୁଁ ଟିକିଏ ଲଛୁ ସାଥିରେ କଥା ହେଇ ଆସୁଚି ।

ଲଛୁ ॥ ଆରେ ନୟନାବାଈ, ଗୋଟେ ଜରୁରୀବାତ୍ ଅଛି । ଫୌରନ୍ ଆ—

(ନୟନା ଆସିଚି ଭିତର ଘରୁ ବୈଠକଖାନାକୁ । ଲଛୁ ଜମେଇ ବସିଚି ବୈଠକଖାନା ଘରେ)

ନୟନା ॥ କଣ ହେଇଚି ? ଇମିତି ହୁରି ପକେଇଚୁ ଯେ ?

ଲଛୁ ॥ ହୁରି ପକେଇବି ନାହିଁ ।.ଯେତେବେଳେ ଆସିଲେ ତୁ ଝିଅଟାକୁ ନେଇ ନାଚଗୀତ ଚଲେଇଚୁ । ତାକୁ ସାରଦାରୁ ଦେଖୁଚି ।

ନୟନା ॥ ମୁଁ ପରା ଜାଣେ, ତୁ ଯେତେବେଳେ ଆସିବୁ କିଛି କରେଇ ଦବୁ ନାହିଁ, କଣ ପାଇଁ ଆସିଚୁ କହ ।

ଲଛୁ ॥ ଆଲୋ, ଖାଲି ସବୁବେଳେ ନାଚଗୀତ ଚାଲିଥିବ ନା' ଆଉ କିଛି କାରବାର ହବ ।

ନୟନା ॥ କାରବାର !!!

ଲଛୁ ॥ ହଁ, ଝିଅ ତ ତୋର ନାଚ ଗୀତରେ ଖୁବ୍ ନାଆଁ କମେଇଲା । ଏଥର କିଛି ଧନ୍ଦା କର । ଗୋଟେ ବଡ଼ ପାର୍ଟି ମିଳିଛି ।

ନୟନା ॥ ଏବେ ସେ କଥା କହନା । ପିଲାଟା କିଛି ଜାଣେନା ।

ଲଛୁ ॥ କହିଲୁ କଣ ନା, ପିଲାଟା କିଛି ଜାଣିନି । ଆଲୋ କେହି କଣ ଆଗରୁ ଜାଣିଥାଏ ? ଲେକିନ୍ ସବୁ ହେଇଯାଏ । ଏ ଘରର ଝିଅ, ତାକୁ ଫେର୍ ଶିଖେଇବାକୁ ହବ ? ତୁ ଖାଲି ବାତ୍ ପକ୍କା କରନା ।

—ଊଣେଇଶି—

ନମ୍ରତା ।। ଏବେ ତରଭର କାହିଁକ ?

ଲଛ୍ମୁ ।। ପାର୍ଟି ବହୁତ ଶାନ୍‌ଦାର, ଇମାନ୍‌ଦାର ।

ନମ୍ରତା ।। ଖାନ୍‌ଦାନୀ ?

ଲଛ୍ମୁ ।। ଆସମାନସେ ଉଁଚା……

ନମ୍ରତା ।। ଦେଖିବାକୁ କେମିତ ?

ଲଛ୍ମୁ ।। ଖୁବ୍ ସୁରତ୍ ।

ନମ୍ରତା ।। ଏ ଲଛ୍ମୁ; ସତ କହ, ମୋ ବେଟୀର ଖବର ସିଏ କୋଉଠୁ ପାଇଲା ।

ଲଛ୍ମୁ ।। ଆଲୋ, ତୋ ବେଟୀକୁ ସାରା ସହର ଜାଣି ଗଲେଣି । ସିଏ ଯୋଉ ରୂପ ପାଇଚନା ଲୋକେ ମତେ ରଖେଇ ଦଉ ନାହାନ୍ତି । ହେଲେ ମୁଁ ତ ଜାଣିଚ ତୁ ସହଜେ ରାଜି ହଉନୁ । ତୋର ଦରକାର ବୁନସ୍ୱାଦ ।

ନମ୍ରତା ।। ହଁ ! ଆରେ ସେଇ ବୁନସ୍ୱାଦ ଦରକାର । ଏ ବଗିଚାର ପ୍ରଥମ ଫୁଲ ଟିକୁ ଯିଏ ନଜର କରିବ ସିଏ ସେମିତିକା ଦିଲ୍‌ଦାର ହେଇଥିବ । ଇଜ୍ଜତ୍‌ଦାର ବ ହେଇଥିବ । ଏଇଥିପାଇଁ କେତେ ରାଜା ଜମିଦାର ଅନେଇ ବସିଥାଅନ୍ତି ।

ଲଛ୍ମୁ ।। ଆଲୋ, ଆଜିକାଲି ସେ ରାଜା ବାଦଶା ଯୁଗ ଚାଲି ଗଲାଣି ।

ନମ୍ରତା ।। ଯୁଗ ସିନା ଗଲା, ହେଲେ ଖାନଦାନୀ ତ କୁଆଡ଼େ ଯାଇନ । ସିମିତି ଉଁଚା ଖାନଦାନୀର ଇଜ୍ଜତ୍‌ଦାର ଗରାଖ ଦରକାର ଏଇ ପହିଲି ରାତିଟା ପାଇଁ । ହାତ ଖୋଲା ଖର୍ଚ୍ଚ ନ ହେଲେ ହବ କିମିତି ? କହିବାକୁ ଗଲେ ଆମ ଘରେ ଏଇଟା ଗୋଟାଏ ବାହାଘର ପର୍ବ ।

ଲଛ୍ମୁ ।। ସେ ସବୁ ମତେ ମାଲୁମ୍ ଅଛି । ସେଇଥି ପାଇଁ ତୋ ମନଲାଖି ଲୋକ ଠିକ୍ କରିଚ । ଲୋକଟା ଦିଲ୍‌ଦାର । ହାତ ଖୋଲା ଖରଚ୍ କରିବ ।

ନମ୍ରତା ।। କଣ କରେ ସିଏ କହିଲ ?

ଲଛ୍ମୁ ।। ବିଜନେସ୍ ବିଜନେସ୍ । ମାନେ ବେପାର । ସହର ଶେଷରେ ତାର ଉଁଚା ହବେଲୀ, ଗାଡ଼ୀ, ଘୋଡ଼ା, କାହିଁରେ କଣ ଥାଅ ।

ନମ୍ରତା ।। ଠିକ୍ ଅଛି ଧନେ ତାଙ୍କୁ ଏଠିକି ନେଇଆ । ବାତ୍ ପକ୍‌କା କରିବା ତା'ପରେ ଭଲ ଦିନ ବାର ଦେଖି……

—କୋରସ—

ଲଛ୍ମୁ ।। ଆରେ ଭଲଧନ ବାର କଣ ? କହୁବୁ ତ ଆଜି ମାନେ ଏଇ ଅଣ୍ଡ ଲେଇ ଅସିବ ।

ନୟନା ।। ଅଣ୍ଡ ? କେମିତ ?

ଲଛ୍ମୁ ।। ବୁଝିଲୁ ନୟନାବାଈ, ହର ଶାମକୋ ସିଏ ମୋ ସାଙ୍ଗରେ ମୁଲାକାତ୍ କରୁଚି—ଆଉ ତୋତେ ସଲାମ୍ ବ ଭେଜୁଛି ।

ନୟନା ।। ଅଚ୍ଛା, ଯା' ତାକୁ ଲେଇଆ—ବାତ୍‌ଚିତ୍ କରିବା ।

ଲଛ୍ମୁ ।। ତୁ ଜବାବ୍ ଦେ ନୟନାବାଈ, ଚୁପିୟ୍ୱା ଲବୁ ବାତ୍ ପକ୍କା କରିବୁ ।

ନୟନା ।। ଲୋକଟାକୁ ନ ଦେଖି, ନ ବୁଝି କମିତ ପକ୍କା ଜବାବ୍ ଦେବ ?

ଲଛ୍ମୁ ।। ଠିକ ହେ, ମୁଁ ଲେଇ ଅସୁଚି । ତୁ କଥାବାର୍ତ୍ତା କର ।

ନୟନା ।। ଦେଖ୍ ଲଛ୍ମୁ, କହୁ ଦଉଚି । ଲୋକଟା ପାଖରୁ ଆଗରୁ କାଛୁ କମିଶନ ନବୁ ନାହିଁ ।

ଲଛ୍ମୁ ।। ଠିକ୍ ଅଛି । କମିଶନ୍ ମୁଁ ହେଠୁ ନେବ ନାହିଁ । ଲେକିନ୍ ବାତ୍ ପକ୍କା ହେଲେ, କମିଶନ ନେବ ତୋ ପାଟରୁ ।

ନୟନା ।। କେଇ ବାତ୍ ନେଇ ।

[ ଲଛ୍ମୁ ଖୁସି ହୋଇ ଚାଲିଗଲା । ନୟନା ପରିଚାରିକା ପାଠକୁ ଡାକି ଅତିଥି ସ୍ୱାଗତ କରିବା ପାଇଁ ଯାହା ଯାହା ଦରକାର ସବୁ ସଜାଇ ରଖିବାକୁ କାନେ କାନେ କହିଦେଲା । ପାଠ ଘରେ ଅତର ଛିଞ୍ଚି ଦେଲା । ଧୂପବତି ଜଳାଇଲା, ଥାଳିଆରେ ପାନ ସଜାଇ ରଖିଲା । ସବୁ ଆୟୋଜନ ସରିଲା ବେଳକୁ ଲଛ୍ମୁ ବାହାରେ କେଶର-ବାଈ ଗଳିରେ ଗରାଖ ଅର୍ଥାତ୍ ପ୍ରାଣନାଥ ବାବୁଙ୍କୁ ନେଇ ଆସିବାର ଦେଖାଯାଏ । ଗଳିରେ ଆସିଲା ବେଳେ ଅତର ଦୋକାନୀ ପ୍ରାଣନାଟ ବାବୁଙ୍କ ଦେହରେ ଅତର ବୋଳି ଦେଲା ଏବଂ ପ୍ରାଣନାଥ ବାବୁ ତାକୁ ବକସିସ୍ ଦେଲେ । ସେହିପରି ଫୁଲ ଦୋକାନୀ ମଧ ଚମ୍ପା ଫୁଲର ହାର ପିନ୍ଧାଇ ବକସିସ୍ ପାଇଲା, ମଦ ଦୋକାନୀକୁ ଲଛ୍ମୁ କେଜେ ମଦର ବଟଲ୍ ଦେଲା । ଗଳି ପାର ହୋଇ ନୟନା

ଘରେ ପାଦ ଦେଲା ବେଳକୁ ପ୍ରାଣନାଥ ବାବୁ କମ୍ପି ଗୋଟିପଣେ ଥରୁଥିଲେ । ଲଛ୍ମି ତାଙ୍କୁ ସାହସ ଦେଇ, ବୁଝେଇ ସୁଝେଇ ନେଇ ଯାଉଥାଏ ]

ଲଛ୍ମି ।। କୁଛ ଘବରାଇୟେ ନେହିଁ ବାବୁଜୀ, ଡରନେକା କୋଇ ବାତ୍ ନେହିଁ । ବିଲ୍ କୁଲ୍ ଆପକା ଯୈସେ ଖାନ୍‌ଦାନୀ ମକାନ୍, ଘରକା ଲଡ଼କୀ ହୈନା । ଆପକା ବରାବର ।

ପ୍ରାଣନାଥ ।। (ଖୁସିରେ) ଠିକ୍ ହୈ, ଠିକ୍ ହୈ । (ପ୍ରାଣନାଥ ଲଛ୍ମିକୁ ବକ୍‌ସିସ୍ ଦେଲେ । ଲଛ୍ମି ସଲାମ୍ କଲା)

[ ଲଛ୍ମି ପ୍ରାଣନାଥକୁ ନେଇ କେଶରବାଈର ବୈଠକ ଖାନାରେ ପ୍ରବେଶ କଲା ଷଣି ପାନ୍ଟ ତାଙ୍କ ଉପରେ ଅତର ଛୁଞ୍ଚି, ଦେହରେ କସ୍ତୁରୀ ବୋଳି ତାଙ୍କୁ ସ୍ୱାଗତ କଲା । ପ୍ରାଣନାଥ ଏ ସବୁ ଉପଚାରରେ ଅନଭ୍ୟସ୍ତ । ସେ ସଂକୁଚିତ ଓ ବିବ୍ରତ ବୋଧକଲେ । ସବୁଠୁ ହାସ୍ୟାସ୍ପଦ କଥା ହେଲା– ସେ ପାନ୍ଟକୁ ଲବଣ୍ୟ ବୋଲି ମନେ କଲେ ଏବଂ ବୋକାଭଳି ତାକୁ ଅନେଇ ରହିଲେ ]

ଲଛ୍ମି ।। ଆପ୍ କୋ ଏମିତି ଘଟଣା ଆଉ କୋଉଠି ପାଇବେ ନାହିଁ । ଏଇ ଗଲା ଯୋଉଁ କେଶରବାଈ ନାଁରେ, ଲାବଣ୍ୟ ବେଟୀ ଖୋଦ୍ ହଉଚି ତା'ର ଅଣନାତୁଣୀ । ଖୁବ୍ ସୁରତ ଯୈସେ ଗୁଦାମୀ, ନାଚ, ଗାନା ଭି ତା'ର ପେଶା । ଆପଣ ତ ପହିଲା ଗରାଖ—ବଜେଇ ଦେଖି ନେବେ ।

(ପ୍ରାଣନାଥ ଲଛ୍ମିର କଥା କିଛୁ ଶୁଣୁ ନ ଥିଲେ । କେବଳ ଯନ୍ତ୍ରଚାଳିତ ପରି ପକେଟ୍‌ରୁ ନୋଟ ବାହାର କରି ଲଛ୍ମି ପକେଟରେ ଗୁଞ୍ଜି ଦେଉଥିଲେ ।)

[ ଏତିକି ବେଳେ ଅନ୍ଦର ମହଲରୁ ପ୍ରବେଶ କଲା ନୟନାବାଈ । ଲଛ୍ମି ଟଙ୍କା ନେଉଥିବାର ଦେଖି ସେ ରାଗରେ ଲଛ୍ମିକୁ ଥରେ ଗୁହିଁ ଦେଇ ଅଭ୍ୟର୍ଥନା କଲା ଭଙ୍ଗୀରେ ଆଗେଇ ଆସିଲା ପ୍ରାଣନାଥ ବାବୁଙ୍କ ନିକଟକୁ ।]

[ଲଲ୍ଲି ଉପ୍ପରେ ଝଙ୍କାଉକ ତା'ର ଟୋପି ଭିତରେ ଲୁଚାଇ ଦେଲା । ପାଟ ଧୂପଥାଳୀଟା ନୟନାବାଈ ହାତକୁ ବଢ଼େଇ ଦେଇ ନିଜେ ପଛେଇଗଲା । ନୟନା-ବାଈ ଧୂପଦାନୀ ହାତରେ ନେଇ ପ୍ରାଣନାଥଙ୍କୁ ବନ୍ଦାଇ ଦେଉ ଦେଉ କହୁଥିଲା ।]

ନୟନା । ଆପଣଙ୍କ ଭଳି ଲୋକ ମୋର ଏଇ ଗରିବ କୁଡ଼ିଆରେ ପାଦ ଦେଲେ... ମୋ ଭାଗ୍ୟ । ନୟନାବାଈ ତା'ର ସଲାମ୍ ଜଣାଉଛି ।

(ନୟନା ସଲାମ୍ ଦେଇ ପାନ ଥାଳିଆଟା ବଢ଼େଇ ଦେଇଛି ପ୍ରାଣନାଥ ଆଡ଼କୁ ଏବଂ ଖୁବ୍ ନିକଟରୁ ତାକୁ ନିରୀକ୍ଷଣ କରି ଚମକି ଉଠିଛି)

ଲଲ୍ଲି ।। (ଖୁବ୍ ସନ୍ତର୍ପଣରେ) କଣ ହେଲା ? ନୟନାବାଈ ରହିଗଲୁ ଯେ ?

(ନୟନାବାଈ ଓ ପ୍ରାଣନାଥ ପରସ୍ପରକୁ ଚିହ୍ନିପାରିବାର ପ୍ରତିକ୍ରିୟା ଦୁହିଁଙ୍କ ଠାରେ ଦେଖା ଦେଇଥିଲା । ପ୍ରାଣନାଥ ଜାଲୁଟ୍ଟ ହୋଇ କୌଣସି ମତେ ନିଜ ଆସନକୁ ଜାବୁଡ଼ି ଧରିଥିଲେ । ନୟନା ବକି ଗ୍ଲାଲଥିଲା—)

ନୟନା ।। ହଇରେ ଲଲ୍ଲି ଏଇ ତୋର ଲକ୍ଷପତି ପ୍ରାଣନାଥ ଚୌଧୁରୀ ସାହେବ ? ଏଇଟା ପରା ମାଗିଖିଆ ପାଣୁଆ—

ଲଲ୍ଲି ।। (ନୟନାର ପାଟିବୁଜି ଧରି) ଚୁପ୍ ଚୁପ୍ ନୟନାବାଈ ତୋର ଦିମାକ୍ ବିଗିଡ଼ି ଗଲାଣି । କାହାକୁ ତୁ କଣ କହୁଚୁ ?

(ପ୍ରାଣନାଥ ଅସ୍ତବ୍ୟସ୍ତ ହୋଇ ଚେୟାରରୁ ତଳକୁ ଖସି ପଡ଼ୁଥାନ୍ତି । ଲଲ୍ଲି ଅଶ୍ୱାସନା ଦେଇ ତାଙ୍କୁ ଠିକ ପୁଣି ଚେୟାରରେ ବସାଉ-ଥାଏ ଏବଂ ନୟନାବାଈକୁ ବକୁଥାଏ)

ନୟନା ।। ତୋର ଦିମାକ୍‌ଟା ବିଗିଡ଼ି ଯାଇଚି ଲଲ୍ଲି; ନ ହେଲେ ତୁ ଏଇ ପାଣୁଆଟାକୁ ଡାକି ଆଣି ଚୁଲ୍ଲା ଟାରେ ଏତେ ମାନ ଇଜ୍ଜତ ପାଣିରେ ପକାଇଲୁ ? କହୁଚୁ କଣ ନା—ଚୌଧୁରୀସାହାବ୍ ?

ଲଲ୍ଲି ।। ନୟନାବାଈ ପହିଲି ଗରାଖଙ୍କୁ ବେଇଜତ୍ କରନା କହୁଚି ।

ନୟନା ।। ଗରାଖ, ହଇରେ ଏଇଟା କି ଗରାଖ ?

(ପ୍ରାଣନାଥ ଉଠିରେ ଲଲ୍ଲିକୁ ଭିଡ଼ି ଧରିଲେ)

—ତେଇଶି—

ନୟନା ।। ବୁଝୁଚରେ ତୁ ସେଇ ପାଣୁଆଟି ? ରାୟବାହାଦୂର ସୁନାମବାବୁଙ୍କ ଗଙ୍ଗା- ମନ୍ଦିର କୋଠୀରେ ପଙ୍ଖା ଟାଣୁଥିଲୁ ? ମତେ ଚହ୍ନି ପାରୁଚୁଟି ?

ପ୍ରାଣନାଥ ।। (ଲଲ୍ଲୁକୁ କୁଣ୍ଢେଇ ଧରି ନୟନା ଆଡ଼କୁ ଚାହିଁଥିଲେ)

ନୟନା ।। ନ ଚହ୍ନିବୁ କେମିତି ? ରାୟବାହାଦୂରଙ୍କ କୋଠିରେ ଯେତେଥର ଜଲସା ହେଉଚି ତତେ ଦେଖିଚି ମୁଁ । ପଙ୍ଖା ଟାଣୁ ଟାଣୁ ନିଦରେ ଢୁଳୁଲାଇ, କେତେ ଥର ମାଡ଼ ଖାଇଚୁ କହ ତ ?

ଲଲ୍ଲୁ ।। ନୟନାବାଈ, କାହାକୁ କଣ କହୁଚୁ ? ଏଇ ଚୌଧୁରୀ ସାହାବଙ୍କ କୋଠି, ଗାଡ଼ି, ଆଟ୍ ଦେଖିଲେ ତୁ ଆଖିଖୋସି ଦବୁ ।

ନୟନା ।। କୋଠା ? ଆଡ଼ ? କରେ ପାଣୁଆ ? କୋଉଠୁ ଏତେ ବଡ଼ଲୋକ ହେଲୁ ? ରେସ୍ଖେ ଡକେଇତ କଲୁ କ ?

ଲଲ୍ଲୁ ।। ତୁ ଜାଣିନୁ ନୟନାବାଈ, ଚୌଧୁରୀ ସାହାବ ସହରର ସବୁଠୁ ବଡ଼ ମଦଭାଟିର ମାଲିକ୍ । ଟଙ୍କା ତାଙ୍କ ଗୋଡ଼ତଳେ ।

ନୟନା ।। ରଖ୍ ତୋ ଟଙ୍କା । ବହୁତ ଟଙ୍କା ଦେଖିଚି । ଇମିତି ଗରାଖ ମୋର ଦରକାର ନାହିଁ କ ତୋ ଭଳି ଦଲାଲ୍ ମୋର ଦରକାର ନାହିଁ । ଯା, ବାହାର୍ ଏଠୁ । ଆଉ ଥରେ ଯଦି ଇମିତି ଶ୍ରେଷ୍ଠ ଲୋକ ଆଣି ଜୁଟେଇବୁ ତ, ତୋ ମୁହଁ ଚାହିଁବ ନାହିଁ । ଛୁଃ ଛୁଃ ଆଜି ସନ୍ଧ୍ୟା ବେଳାଟା ବେକାର ହୋଇଗଲା । ଯା' ପଳା ପଳା—

(ପ୍ରାଣନାଥ ଭୟରେ ଲଲ୍ଲୁ ବେକରେ ଓହଳ ପଡ଼ିଲେ । ଲଲ୍ଲୁ ନିରୁପାୟ ହୋଇ ତାଙ୍କୁ ଟେକା ଟେକା ବାହାରକୁ ନେଇ ଯାଉ ଯାଉ ତାଙ୍କ ପକେଟ୍ ରେ ହାତ ପୁରାଇ ସବୁ ଟଙ୍କା ନେଇଗଲା)

ଲଲ୍ଲୁ ।। କିଛି ପରବାୟ ନାହିଁ ଚୌଧୁରୀ ସାହାବ୍— ଆଜି ଅନୁକୂଳଟା ଖରାପ । ଚାଲନ୍ତୁ, ଆଉ ଗୋଟାଏ ଘରକୁ ନେଇଯିବି । ଏଇ ନୟନା- ବାଈର ମୁହଁଟା ଉପରକୁ ହେଇଗଲାଣି । ଆରେ···କଣ ଭାବିଚି ? ଲଲ୍ଲୁ ହାତରେ ତମ ଜାତକ । ଲଲ୍ଲୁ ମନକଲେ ତମକୁ ଏକା ଝଟକେ ବସ୍ତିରୁ ଉଠେଇ ଦବ ।

—ଅନ୍ଧାର—

—ଚବଣ—

# ଦ୍ୱିତୀୟ ଦୃଶ୍ୟାଂଚଳ

ସମସ୍ତ ସକାଳ । ନୟନାବାଈର ବୈଠକଖାନା ଧୀରେ ଧୀରେ ଆଲୋକିତ ହେଲା । ପରଗୃହିକା 'ପାଟ' ଫୁଲ ଗୁଞ୍ଜଣୀରେ ଘର ଭିତର ଓଳାଉଥିବାର ଦେଖାଯାଏ । ଭିତରୁ ଭାସି ଆସୁଥାଏ ଏକ ଗମ୍ଭୀର ଗଜଲ୍‌ର ଆଳାପ । ଏତିକି ବେଳେ ବାହାରୁ ଆସିଲେ ରସିକମୋହନ ।

ରସିକ ॥ ସୁନୟନା, ସୁନୟନା ! (ପାଟକୁ ଦେଖି) କି ଲୋ ପାଟ, କ'ଣ କେଉଁଠିକୁ ଯାଇଛନ୍ତି ନାହାନ୍ତି ?

ପାଟ ॥ ମା, ଆଉ ଲାବଣ୍ୟ ଦେଇ ସବୁ କାଳୀ ମନ୍ଦିରକୁ ଯାଇଚନ୍ତି । ଏଇନେ ଆସିବେ ।

ରସିକ ॥ ହଉ, ତୁ ଆଗେ ପାନ-ସଜଟା ଆଣିଲୁ । (ପାଟ ଭିତରକୁ ଯାଇ ଦାମୀ ପାନ-ସଜ ଆଣି ରସିକଙ୍କ ଆଗରେ ଥୋଇଲା । ତା'ପରେ ରସିକଙ୍କ ଲୁଗା, ଜାମା ଚିରି ଯାଇଥିବାର ଲକ୍ଷ୍ୟକରି ପଚାରିଲା)

ପାଟ ॥ ତମ ଜାମା ଚିରି ଯାଇଛି ଯେ ?

ରସିକ ॥ (ପାନ ଭାଙ୍ଗୁ ଭାଙ୍ଗୁ) ଆଲୋ ବେଳକାଳ ଯାହା ହେଲାଣି ମତେ ଆଉ ବାଟ ଚଲେଇ ଦେବେ ନାହିଁ ।

ପାଟ ॥ ହବା କଥା । ତମ ନାଆଁ ପରା ରସିକ ମୋହନ । ବାଟଘାଟରେ ଯିଏ ତମକୁ ଦେଖିବେ—ସମସ୍ତେ ରସିଯିବେ ।

ରସିକ ॥ ଆଲୋ ଯୁବା ବୟସ ଗଲା, ଆଉ ଏଇ ବୁଢ଼ାଟାକୁ ରସିବ କିଏ ଲୋ ?

ପାଟ ॥ ମଲା, ତମେ କି ବୁଢ଼ା ମ ? ଆଜିକାଲି ଢେରପଣ ଲୋକ ପରା ମୁଣ୍ଡ ରଙ୍ଗ ମାରି ନିଜକୁ ଯୁବା ଦେଖେଇ ହଉଚନ୍ତି ।

ରସିକ ।। ମୋର କାହାରିକି ଦେଖେଇ ହବାର ନାହିଁ । ମୋ ଆଗରେ ଏଇ ଦୁନିଆଁ ର ରଙ୍ଗ କମିତି ବଦଳୁଚି — ମୁଁ ଖାଲି ସେଇଟା ଦେଖିବି ବୋଲି ବସୁଚି । ବୁଝିଲୁ ପାଠ ବୟସ ଆସି ତ କୋଡ଼ି ଦଶ ହେଲା । ମୋର ସାଙ୍ଗମାନଙ୍କ ଘରକୁ ଯାଇ ଦେଖେତ କିଏ ଦୀକ୍ଷା ନେଇ ଗେରୁଆ ପିନ୍ଧିଚି ତ କିଏ ଗୀତା ଭାଗବତ ପଢୁଚି । କିଏ ମାଳି ଗଡ଼ଉଚି ତ କିଏ ତୀର୍ଥ କରି ଯାଉଚି । ସେମାନଙ୍କୁ ଦେଖିଲେ ମତେ ହସଲଗେ ।

ପାଠ ।। ହସିବାର କଣ ଅଛି ? ବୁଢ଼ା ବଅସ ହେଲେ ସମସ୍ତେ ତ ଇମିତି ଧର୍ମ କର୍ମକୁ ମନ ବଳାନ୍ତି ।

ରସିକ ।। ହଁ କରିବେ ନାହିଁ କମିତି ? ଯୁବାକାଳେ ଯୋଉଁ ପାପ ସବୁ କରି-ଥାଆନ୍ତି ସେ ଗୁଡ଼ା ଧାର୍ କରିବେ ? ବୁଝିଲୁ ପାଠ ଧରମ କରମ ସବୁ ମିଛ । ଖାଲି ଧରମକୁ ଆଖି ଠାରୁ । ଗେରୁଆ ପିନ୍ଧି ମାଳି ଗଡ଼େଇଲେ କି ତୀର୍ଥ ବ୍ରତ କଲେ ମନ ପବିତ୍ର ହେଇଯିବ ସେ ବିଶ୍ୱାସ ମୋର ନାହିଁ ।

ପାଠ ।। ସତେ ବାବୁ, ଦେଖିଲି ଦୁନିଆଁ ରେ ତମେ ଏକା ଜଣେ, ଏଇ ବସ୍ତିକୁ ଆସୁଚ କୋଡ଼ିଏ ବର୍ଷ ହେଲା । ହେଲେ ଦିନେ ଦେଖିଲି ନାହିଁ ମଦ କି ମାଇକିନା ପାଖ ମାଡ଼ିବାର । ମନଟା ତମର ଗଙ୍ଗାଜଳ ।

ରସିକ ।। ଆଲୋ ସେ ସବୁ ଇତର ଲୋକଙ୍କ ପାଇଁ । ମୋର ଟିକିଏ ଆନନ୍ଦ ଦରକାର । ସେତକ ମିଳୁଚି ବୋଲି ଏଠିକି ଆସେ । ଗୀତାରେ କହୁଚି ନିଷ୍କାମ ସାଧନା । ସେ ସାଧନା ପାଇଁ ଦେଉଳକୁ ଯିବା ଦରକାର ନାହିଁ । ନିଷ୍ଠା ଥିଲେ ଏଇଠି ବସି ସବୁ ହେଇ ପାରିବ । ବୁଝିଲୁ ।

(ଏତିକି ବେଳେ ନୟନା ଦେଉଳରୁ ଭୋଗ ନେଇ ଫେରିଲା । ରସିକ ନୟନାକୁ ଦେଖି ପ୍ରଗଲଭ୍ ହୋଇ ଉଠିଲେ)

ରସିକ ଗୋଡ଼ହାତ ଲମ୍ବାଇ ଦେଇ ବସିଥିଲେ ।
ସୁନୟନା ଠାକୁର ସିନ୍ଦୂର ଆଣି ତାଙ୍କ କଣ୍ଠରେ ଲଗାଇ
ପାଟିରେ ଭୋଗ ଦେଲା ।

ରସିକ ।। ଆଜି ଦେଖୁଛ ଅନୁକୂଳଟା ଭଲ । ଆସୁ ଆସୁ କାଳୀ ମାଆଙ୍କ ସିନ୍ଦୂର ଆଉ ଭୋଗ ମିଳିଗଲା । ଆଚ୍ଛା ଠାକୁରଙ୍କୁ କଣ ମାଗିଲୁ କହୁତ ?

ନୟନା ।। ମୋର ଆଉ କଣ ମାଗିବାର ଅଛି । ଯାହା ମାଗୁଛ ସେଇ ତୁମ ପାଇଁ ।

ରସିକ ।। ଲବଣ୍ୟ ପରା ତୋ ସାଥିରେ ଯାଇଥିଲା । ତାକୁ କୋଉଠି ଛାଡ଼ି ଆସିଲୁ ।

ନୟନା ।। ବିନାୟକ ପଣ୍ଡିତଙ୍କ ଘରେ । ସେଠି ବସି ସିଏ "ଶୃଙ୍ଗାର ଶତକ" ସଂସ୍କୃତ ପୋଥିର ଅନୁବାଦ କରୁଛି ।

ରସିକ ।। ତୁ ଯାହା କହ ସୁନୟନା, ତୋ ଝିଅ ତୋତେ ବଳେଇ ଗଲା । ଏଇ କେଶରବାଈ ଗଳାର କୋଉ ଝିଅଟା ତା ଭଳି ଏତେ ଗୁଣେର ? ତମେ ସବୁ ଖାଲି ଗୀତ ନାଚ ନେଇ ମାତିଥିଲ । ଓଡ଼ିଆ, ଇଂରାଜୀ, ସଂସ୍କୃତରେ ରସଶାସ୍ତ୍ର ନେଇ ଏତେ ଆଲୋଚନା ଗବେଷଣା କରିଥିଲ କିଏ ? ତୋ ଝିଅ ଦିନେ ଖୁବ୍ ବଡ଼ ହବ ସୁନୟନା ।

ନୟନା ।। ତମେ କଇଲାଣ କର; ସିଏ ବଡ଼ ହଉ । ଏଇ ଘରର ନାଆଁ ରଖୁ । ଆଚ୍ଛା ଆଜି ତମ କାମାପଟା ଇମିତ ସବୁ ଚିରି ଯାଇଛି ଯେ ?

ରସିକ ।। ଆଲୋ କାହିଁକି କହୁଚୁ ? ଆଜି କାଲି ରାସ୍ତାରେ ଯୋଉ ଝମେଲା । ଲୋକ ଗହଳି କାନ୍ଧିରେ କଣ ? ପାଟିତୁଣ୍ଡ ଆଉ "ଧର୍‌ଧର୍ ମର୍ ମାର୍" ଶବ୍ଦରେ ଖଣ୍ଡମଣ୍ଡଳ କମ୍ପି ଯାଉଚି । ଠେଲା ପେଲା ଭିତରକୁ ଯାଇଁ ଦେଖେତ ଗୋଟାଏ ପୁଅ ଗୋଟେ ଝିଅକୁ ଛୁରୀ ଭୁଷି ଦେଇଚି । ଝିଅଟା ବେହୋସ । ରାସ୍ତାରେ ପିଚ୍‌ପିଚ୍ ଲାଲ ରକ୍ତ !!!

ନୟନା ।। କାହିଁକି ? କଥା କଣ ?

ରସିକ ।। ପ୍ରେମ, ପ୍ରେମ । ଏ ଯୁଗର ପ୍ରେମ !!!

ନୟନା ।। ଛୁରୀ ମରାମରିରେ ଫେର୍ ପ୍ରେମ କଣ ?

—ସବେଇଣି—

ରସିକ ।। ସେଇଆ ତ ମୁଁ ଭାବୁଚି । ଏକା କଲେଜର ପୁଅ ଝିଅ । ଝିଅଟା ପୁଅକୁ ପ୍ରେମ କଲା ନାହିଁ ବୋଲି ଏକାବେଳେକେ ଛୁରି !!!

ନୟନା ।। ଆଜି କାଲି ପୁଅମାନେ କଣ ହେଲେଣି ।

ରସିକ ।। ଆଲୋ ସେଇକଥା ମୁଁ ବି ଭାବୁଚି । ପ୍ରେମ କରିବାର କାଇଦା ଏ ଗୁଣ୍ଡାଙ୍କୁ ଜଣା ନାହିଁ । କରେ ବାବା ଥରେ କଟାକ୍ଷ ହାଣି ଦେଲେ ତ ଝିଅଟା ଘାଏଲ୍ ହୋଇଯିବ । ଅଉ ଛୁରି କଢ଼ିଚ କଣ ହବ ? ପିଲାଏ ଆଜିକାଲି ଶିଖିଲେ ନାହିଁ ସୁନୟନା, କିଛି ଶିଖିଲେ ନାହିଁ । ଖାଲି ପେଣ୍ଟଟାକୁ କେତେବେଳେ ଢ଼ିଲା କରି ଦେଉଚନ୍ତି ତ କେତେ-ବେଳେ ପୁରା ଟାଇଟ୍ କରି ଦେଉଚନ୍ତି ।

ନୟନା ।। ସବୁ ଏଇ ସିନେମାର କରାମତି ।

ରସିକ ।। ସେଇଥିରେ ତ ସିନେମାରେ ଟୋକାମାନଙ୍କ ଭିଡ଼ କାହିଁରେ କଣ । ତିନିଟଙ୍କା ଟିକଟ ବେଳେ ବେଳେ ଦଶଟଙ୍କାରେ ବିକି ହଉଚି ।

ନୟନା ।। ତମେ ବି ତମ ଟୋକାବେଳେ ଖୁବ୍ ସିନେମା ଦେଖୁଥିଲ ।

ରସିକ ।। ଦେଖୁଥିଲି ଯେ, ହେଲେ ସେତେବେଳେକାର ସିନେମା ଆଉ ଏବେକାର ସିନେମା ଭିତରେ ଆକାଶ ପାତାଳ ତଫାତ୍ । ଆଜିକାଲି ସିନେମା ମୁଁ ଆଉ ଦେଖୁନି ।

ନୟନା ।। କାହିଁକି ? କଣ ବୁଢ଼ା ହୋଇଗଲ ବୋଲି ?

ରସିକ ।। ଆଲୋ କହିବି କଣ ? ଏବେ ଦିନେ ସିନେମା ହଲ୍ ଉପରେ ନଜର ପଡ଼ିଗଲା । ଲେଖା ହୋଇଚି ଛବିଟି କେବଳ ବୟସ୍କଙ୍କ ପାଇଁ । ଭାବିଲି ଛବିଟା ବୁଢ଼ାଙ୍କ ପାଇଁ ହୋଇଥିବ । ଟିକଟ୍ କରି ପଶିଗଲି । କିଛି ସମୟ ଦେଖିଲା ପରେ ଖାଲି ଶୁଣି ପାରିଲି ପାଟିତୁଣ୍ଡ, ହୁଇସିଲ୍ । ବିରକ୍ତ ହୋଇ ମତେ ନିଦ ଆସିଗଲା । ହଠାତ୍ ହଲ୍ ଭିତରେ ପାଟିତୁଣ୍ଡ ବଢ଼ିଗଲା । ଆଖି ଖୋଲି ଦେଖିଲି, ସମସ୍ତ ଦର୍ଶକ ପ୍ରାୟ ଉତ୍ତେଜିତ । ପରଦା ଉପରେ ଦେଖେ ତ ଗୋଟାଏ ପୁଅ ଗୋଟାଏ ଝିଅ ଉପରେ ପାଶବିକ ଅତ୍ୟାଚାର କରୁଚି । ଝିଅର ଶାଢ଼ୀଟାକୁ ଚିରି-ଦେଇ ସାରିଲାଣି । ବ୍ଲାଉଜଟା ଚିରିବାକୁ ବସିଚି । ଦେଖୁ ଦେଖୁ

ବ୍ଲାଉଜକଟା ବି ଚଳିଗଲା । କଣ କହିବି ସୁନୟନା ଆଜିକାଲି ଏଇ ସବୁ ଛବି ଦେଖି ଟୋକା-ଟୋକୀ ମାନେ ଯାହା ହଉଚନ୍ତି ନା—

ନୟନା ।। ଛିଃ ଛିଃ ସିନେମାରୁ ଏଇଆ ସବୁ ଶିଖୁଚନ୍ତି ଆଜିକାଲିକା ପିଲାଏ ।

ପାଠ ।। ମା, ଆସ ଟିକିଏ ଭଣ୍ଡାର ଘରୁ ଜିନିଷ କାଢ଼ିଦିଅ ।

ନୟନା ।। (ରସିକ ପ୍ରତି) ତମେ ଟିକିଏ ଥା—ମୁଁ ଆସୁଚି ।
(ଏତିକି ବେଳେ ବାହାରୁ ଗୁରୁଗମ୍ଭୀର ଗଳାରେ ଶୁଭିଲା)

ଜ୍ଞାନପ୍ରକାଶ ।। ଭିତରକୁ ଆସିପାରେ କି ?

ରସିକ ।। ଆସନ୍ତୁ, ଆସନ୍ତୁ । ଏଠିକି ଆସିବା ପାଇଁ ଦୁନିଆଁରେ କାହାରିକି ତ ମନା ନାହିଁ । ଖାଲି ପକେଟ୍‌ରେ ଧନ ଥିଲେ ହେଲା ।

ଜ୍ଞାନପ୍ରକାଶ ।। କ୍ଷମା କରିବେ । ମୁଁ କିନ୍ତୁ ସେଥିପାଇଁ ଆସି ନାହିଁ ।

ରସିକ ।। ବାବୁ ଇମିତି ଲୋକ ଅନେକ ଦେଖିଲିଣି ଯୋଉଁମାନେ ରାତିରେ ଏଠି ପାଦ ପକେଇବାକୁ ଭୟ କରନ୍ତି । କିନ୍ତୁ ଦିନ ଆଲୁଅରେ ଏଠିକି ଆସିବାକୁ ନିରାପଦ ମନେ କରନ୍ତି ।

ଜ୍ଞାନପ୍ରକାଶ ।। ଆପଣ କି ସାଙ୍ଘାତିକ ଅଭଦ୍ର !!!

ରସିକ ।। ଅଭଦ୍ର, ଅଶ୍ଳୀଳ—ଏ ସବୁ ଶବ୍ଦ ଏଇ ଘରର ଚାରିକାନ୍ଥ ଭିତରେ ଆଦୌ ପ୍ରତିଧ୍ୱନି ସୃଷ୍ଟି କରେ ନାହିଁ । ବରଂ ଲୋକେ ଏଠିକି ଆସନ୍ତି ଅଭଦ୍ର, ଅଶ୍ଳୀଳ ହେବାପାଇଁ ।

ଜ୍ଞାନ ।। ତା ହେଲେ ଆପଣଙ୍କ ବିଚାରରେ ମୁଁ ଅଭଦ୍ର ?

ରସିକ ।। ହୁଏତ ଆଜଯାଏ ସେ ସୁଯୋଗ ଆପଣ ପାଇ ନାହାନ୍ତି । ସୁଯୋଗ ଅପେକ୍ଷାରେ ଅଛନ୍ତି ।

ଜ୍ଞାନ ।। ଚୁପ୍ କରନ୍ତୁ । ଜାଣିଚନ୍ତି ମୁଁ କିଏ ?

ରସିକ ।। ପରିଚୟ ଦେଲେ ତ ଜାଣିବି । ଆପଣ ତ ମୂଳରୁ ତାତି ଯାଉଚନ୍ତି···

ଜ୍ଞାନ ।। ମୋ ନାମ ଜ୍ଞାନ ପ୍ରକାଶ ବ୍ରହ୍ମଚାରୀ ।

ରସିକ ।। ଚମତ୍କାର ନାମ । କିନ୍ତୁ ବ୍ରହ୍ମଚାରୀର କୌଣସି ଲକ୍ଷଣ ତ ଆପଣଙ୍କ ଆଖିରେ ଦେଖୁନି ।

—ଅଣତିରିଶ—

ଜ୍ଞାନ ।। କଣ ଲକ୍ଷଣ ଦେଖୁଚନ୍ତି ।

ରସିକ ।। ଦେଖୁଛି ଦ୍ୱିତୀୟ ରିପୁ ଅର୍ଥାତ୍ "କ୍ରୋଧ"ଟିକୁ ଆପଣ ଆୟତ୍ତ କରି ନାହାନ୍ତି—ଆଉ ଅନ୍ୟ ରିପୁ ମାନଙ୍କ କଥା ପଗ୍ଚରେ କିଏ ? ହଉ ଛାଡ଼ନ୍ତୁ ସେ କଥା । ପରିଚୟ ତ ପାଇଲି । ଏଥର ଆସିବାର ଉଦ୍ଦେଶ୍ୟଟା—

ଜ୍ଞାନ ।। ନିକଟରେ ମ୍ୟୁନିସିପାଲିଟି ଇଲେକ୍‌ସନ ହେଉଛି, ଆପଣ ଜାଣିଥିବେ

ରସିକ ।। ନା, ଜାଣିନି । ଜାଣିବାର ଆବଶ୍ୟକତା ମଧ୍ୟ ନାହିଁ ।

ଜ୍ଞାନ ।। କଣ ହେଲି ? ଆପଣ ଏଇ ସହରର ଜଣେ ନାଗରିକ । ଅଥଚ ମ୍ୟୁନିସିପାଲ୍‌ଟି ନିର୍ବାଚନର ଖବର ଆପଣ ରଖି ନାହାନ୍ତି ।

ରସିକ ।। ଏଇ ସହରରେ ଯେ ମ୍ୟୁନିସିପାଲିଟି ନାମକ ଏକ ସଂସ୍ଥା ଅଛି ସେ କଥା ମୁଁ ଅନୁଭବ କରିପାରିନି ।

ଜ୍ଞାନ ।। ଏଇ ହଉଚି ଓଡ଼ିଶାର ପ୍ରାଚୀନତମ ସହର । ଦୀର୍ଘଦିନ ଧରି ଯେଉଁମାନେ ମ୍ୟୁନିସିପାଲିଟି ପରି ଏକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନକୁ ନିର୍ବାଚିତ ହୋଇ ଆସିଚନ୍ତି ସେମାନେ ଏଇ ସହର ପାଇଁ କିଛି କରିନାହାନ୍ତି । ରାସ୍ତା, ଘାଟ, ନାଳ ନର୍ଦ୍ଦମା, ଆଲୁଅ, ପାଣି ପ୍ରତି ଦୃଷ୍ଟି ନାହିଁ । ଅଥଚ ନିର୍ବାଚିତ ପ୍ରତିନିଧିମାନେ ନିର୍ବିକାର ଭାବରେ ପାର୍ଟି-ପଲିଟିକ୍‌ସ କରି ଚାଲିଚନ୍ତି । ଏ ସବୁ ଶୋଧିଣ ବନ୍ଦ ନ ହେଲେ...

ରସିକ ।। ଆଜ୍ଞା ଟିକିଏ ରହିବେ । ମୁଁ ଗ୍ଲାସେ ପାଣି ମଗେଇ ଦଉଚି । ଏ ପାଟି ପାଣି ଗ୍ଲାସେ ଦେଇଗଲୁ ।

ଜ୍ଞାନ ।। ମୁଁ ତ ପାଣି ମାଗି ନାହିଁ ।

ରସିକ ।। ମାଗି ନାହାନ୍ତି ସତ କିନ୍ତୁ ଆରମ୍ଭ କଲେଣି; ମୁଁ ବୁଝି ପାରୁଚି ଆପଙ୍କର ପାଣି ଦରକାର ପଡ଼ିବ । ସେଇଥିପାଇଁ ଆଗରୁ ମଗେଇ ଦେବା ଭଲ ।

ଜ୍ଞାନ ।। ଆପଣ ମୋତେ ପରିହାସ କରୁଛନ୍ତି ?

ରସିକ ।। ଆଜ୍ଞା ନା । ବରଂ ଆପଣଙ୍କର ଏଠିକି ଆସିବା ଏକ ମସ୍ତବଡ଼ ପରିହାସ ।

ଜ୍ଞାନପ୍ରକାଶ ।। ଆସିଚ ଯେତେବେଳେ, ମୋ କଥା ମୁଁ କହିକରି ଯିବି । ଏ ସହରର ସମସ୍ତ ଆବର୍ଜନା ଦୂର କରିବା ଦାୟିତ୍ୱ ଆମମାନଙ୍କର । ତେଣୁ ଆଗାମୀ ନିର୍ବାଚନରେ ଯଦି ଆପଣମାନେ ମୋତେ ଭୋଟ ଦେଇ ଜୟଯୁକ୍ତ କରନ୍ତି, ଏଇ ସହରକୁ ସ୍ୱଚ୍ଛ, ସୁନ୍ଦର କରି ତୋଳିବା ସହିତ ସମାଜର କଳଙ୍କ ଏଇ ଗଣିକା ବସ୍ତିକୁ ନୈତିକ ଅଧଃପତନରୁ ଦୂର କରିବାକୁ ମୁଁ ଚେଷ୍ଟା କରିବି । ନାରୀଜାତିକୁ ଏଇ କଳଙ୍କରୁ ଉଦ୍ଧାର କରିବା ମୋ ଜୀବନର ବ୍ରତ ।

ରସିକ ।। ବୁଝିଲି, ଆପଣ ଯାତିମତ ଜାଲ ପକେଇ ସେମାନଙ୍କୁ ଉଦ୍ଧାର କରିବେ ବୋଲି ପ୍ରତିଜ୍ଞାବଦ୍ଧ । କିନ୍ତୁ ସତ କହନ୍ତୁ ତ ସମାଜର କଳଙ୍କ କଣ ଆଜି ଖାଲି ଏଇ ଗଣିକା ବସ୍ତିରେ ରହିଚି ।

ଜ୍ଞାନପ୍ରକାଶ ।। ମୋର ଧାରଣା ସେଇଆ ।

ରସିକ ।। ଦେଖନ୍ତୁ ବ୍ରହ୍ମଗୃହୀ ବାବୁ । ଆପଣ ବୋଧହୁଏ ଜାଣନ୍ତି ନାହିଁ ଏଇ ଗଣିକା ସମାଜର ସମସ୍ୟା । ଯଦି ଧୈର୍ଯ୍ୟଥାଏ ଶୁଣନ୍ତୁ ବି ପଦେ କହିବି ।

ଜ୍ଞାନପ୍ରକାଶ ।। କୁହନ୍ତୁ ।

ରସିକ ।। କର୍ମକ୍ଳାନ୍ତ ମସ୍ତିଷ୍କକୁ ଆନନ୍ଦ ଦେବାପାଇଁ ଆଜି ଯେମିତି ଚଳଚିତ୍ର, ଥିଏଟର ଇତ୍ୟାଦି ହେଇଚି ସେମିତି ଦିନଥିଲା ସମାଜରେ— ଆନନ୍ଦ ଆହରଣର ଏକମାତ୍ର ପୀଠ ଥିଲା ଏଇ ଗଣିକା ବସ୍ତି । ପୌରାଣିକ ଆଖ୍ୟାନ ଆଉ ଐତିହାସିକ ଯୁଗରେ ମଧ୍ୟ ଗଣିକାମାନଙ୍କ ଭୂମିକା, ସମାଜରେ ଉଲ୍ଲେଖଯୋଗ୍ୟ । ଆଜି କିନ୍ତୁ ସମାଜ ବିପରୀତ ମୁଖୀ । ଗଣିକା ବସ୍ତିର ନାଚ ଗୀତର ଆସର ଆଉ ଲୋକଙ୍କୁ ଆକର୍ଷଣ କରୁନାହିଁ । ନାଚଗୀତ ଆନନ୍ଦ ସବୁ ମିଳୁଚି ସିନେମାରୁ । ଆଉ ଦେହ-ବ୍ୟବସାୟ ତ ଏବେ ରାସ୍ତାରେ । 'କଲଗାର୍ଲ' ନାମକ ଶବ୍ଦଟି ପ୍ରତ୍ୟେକ ସହରର ଯୁବ ମହଲରେ ଅତି ପରିଚିତ । ଗଣିକା-ମାନଙ୍କର ପାରମ୍ପରିକ ବ୍ୟବସାୟ ଛଡ଼େଇ ନେଇଛନ୍ତି ସମାଜର ଭଦ୍ରମୁଖାଧାରୀ କଲଗାର୍ଲ ମାନେ । ଭାଙ୍ଗିଯାଇଚି ଗଣିକା ବସ୍ତି । ଆଜି ଏଇ ବସ୍ତିର ଅଧିକାଂଶ ଘରେ ଦେଖନ୍ତୁ ଆଲୁଅ ଜଳୁନି ।

—ଏକତିରିଶ—

ଯେଉଁ କେତୋଟି ଘରେ ମିଶ୍ରି ମିଶ୍ରି ହୋଇ ଜଳୁଚ—ତାକୁ ଜଳିବାକୁ ଦିଅନ୍ତୁ କାରଣ ଏଇ ମାନଙ୍କ ଭିତରେ ରହିଚ ଆମ ପ୍ରାଚୀନ ଓଡ଼ିଶୀ ନୃତ୍ୟଗୀତର ମହାନ ପରମ୍ପରା ।

ଜ୍ଞାନପ୍ରକାଶ ।। ଆପଣ ତ ଗଣିକାମାନଙ୍କ ସପକ୍ଷରେ ଚମତ୍କାର ଯୁକ୍ତି କରି ପାରୁଚନ୍ତି —ଆପଣ କିଏ ଏ ଘରର ମାଲିକ ?

ରସିକ ।। ଏ ଘରର ମାଲିକ କେହି ହୋଇ ପାରନ୍ତି ନାହିଁ ଆଜ୍ଞା, ସମସ୍ତେ ଏଠି କେବଳ ଗ୍ରାହକ ।

ଜ୍ଞାନପ୍ରକାଶ ।। ଆଉ ଆପଣ ଏଠିକାର ଭକ୍ତ ?

ରସିକ ।। ନା ସେବକ କହିଲେ ଚଳିବ ।

( ଜ୍ଞାନପ୍ରକାଶ ବିରକ୍ତ ହୋଇ ଚାଲିଯାଉଥିଲେ )

ରସିକ ।। ଶୁଣନ୍ତୁ; ଚାଲିଯାଉଛନ୍ତି କୁଆଡ଼େ ?

ଜ୍ଞାନ ।। ଅଯଥାରେ ସମୟ ନଷ୍ଟ କରିବାର ଧୈର୍ଯ୍ୟ ମୋର ନାହିଁ ।

ରସିକ ।। ନିର୍ବାଚନରେ ଛିଡ଼ା ହେଲେ ଧୈର୍ଯ୍ୟ ଦରକାର । ଏଇ ସହରର ଉନ୍ନୟନ ପାଇଁ ଜଣେ ଧୈର୍ଯ୍ୟବାନ ସୁପୁରୁଷର ଏକାନ୍ତ ପ୍ରୟୋଜନ । ଆପଣଙ୍କ ଆଗାମୀ ନିର୍ବାଚନ ପାଇଁ ମୋର ପଦେ କଥା ଶୁଣିବେ ?

ଜ୍ଞାନପ୍ରକାଶ ।। କିଣ କହନ୍ତୁ ।

ରସିକ ।। ଆପଣଙ୍କ ନିର୍ବାଚନ ବକ୍ତୃତାରେ ଏହି ପ୍ରାଚୀନ ଗଣିକା ବସ୍ତିର କଳଙ୍କ ନେଇ କିଛି ନ କହି ବରଂ ସହରର ହୋଟେଲ, ଲଜ୍‌ଂ, ରାସ୍ତା କଡ଼ରେ ଚାଲିଥିବା ନଗ୍ନ 'କଲଗାର୍ଲ' ବ୍ୟବସାୟୀମାନଙ୍କ କଥା କହନ୍ତୁ । ରାସ୍ତା, ଘାଟ, ନାଳ, ନର୍ଦ୍ଦମା, ଆଲୁଅ ପାଣି ପ୍ରତି ନଜର ଦିଅନ୍ତୁ । କିଣ ମନେ ରହିଲା ?

( ଏତିକିବେଳେ ପାଠ ପାଣି ନେଇ ଆସିଗଲା )

ରସିକ ।। ନିଅନ୍ତୁ ଆସିଗଲା ଆପଣଙ୍କ ପାଇଁ ପାଣି ।

ଜ୍ଞାନପ୍ରକାଶ ।। (ରାଗରେ) ଆପଣ ପିଇଦିଅନ୍ତୁ ।

ରସିକ ।। (ପାଠ ହାତରୁ ପାଣି ଗ୍ଲାସଟା ନେଇ ନିଜେ ପିଇଦେଲେ । ଜ୍ଞାନପ୍ରକାଶ ସେତେବେଳକୁ ରାଗରେ ତମ ତମ ହୋଇ ଚାଲିଗଲେଣି । )

— ବତିଶ —

# ପଂଚମ ଦୃଶ୍ୟାଂଚଳ

ସହରର ଉପାନ୍ତରେ ରାଜା ସୂର୍ଯ୍ୟଭାନୁଙ୍କର ଭଗ୍ନ ଜୀର୍ଣ୍ଣ ପ୍ରାସାଦ । ରାଜ୍ୟ ଯାଇଛି; ରାଜତ୍ୱ ଯାଇଛି । ନିସ୍ୱ ରାଜା ସୂର୍ଯ୍ୟଭାନୁଙ୍କୁ ଛାଡ଼ି ଯାଇନି କେବଳ ତାଙ୍କର ଏକମାତ୍ର ବିଶ୍ୱସ୍ତ ଚାକର ଘୁରୁଚରଣ । ରାଜା ସୂର୍ଯ୍ୟଭାନୁ ଆଜିକାର ଗଣତାନ୍ତ୍ରିକ ସମାଜରେ ଅବହେଳିତ । ତଥାପି ସେଥିରେ ତାଙ୍କର ଦୁଃଖ ନାହିଁ । ଜୀବନ ସହିତ ନୂଆ କରି ସେ ସାଲିସ୍ କରିଚନ୍ତି । ନିଜେ ବୁଡ଼ି ରହିଚନ୍ତି ତାଙ୍କର ଅତି ଆଦରର ସଂଗୀତ ଜଗତରେ । ଭିତରୁ ଗୁରୁ ଗମ୍ଭୀର ଗଳାରେ ତାଙ୍କର 'ପିଲୁ' ରାଗର ଆଳାପ ଶୁଭୁଛି । ବାହାର ବୈଠକଖାନାରେ ଘୁରୁଚରଣ ରୂପା ହୁକାଦାନୀରେ ହୁକା ତିଆରି କରୁଚି । ଏତିକିବେଳେ ରାଜା ସୂର୍ଯ୍ୟଭାନୁଙ୍କର ପୁରାତନ ଚାକର ସନାତନ ସିଏ ବର୍ତ୍ତମାନ କଳାବ୍ୟବସାୟୀ ଓ ରାଜନୀତି କରି ମସ୍ତ ବଡ଼ଲୋକ—ତା' ଘରର ଚାକର ଅଗାଧୁ ଅସି ପ୍ରବେଶ କରିଚି ବୈଠକ ଖାନାରେ । ଅଗାଧୁ ଉଦ୍ଧତ—ଠିକ୍ ନିଜ ପ୍ରଭୁ ପରି ।

ଘୁରୁଚରଣ ॥ (ହୁକା ସଜାଡ଼ୁ ସଜାଡ଼ୁ) କିରେ ଅଗାଧୁ । କଣ ପଚାରୁ, ଉଟର ନାହିଁ ଉଆସ ଭିତରକୁ ପଶି ଆସୁଚୁ । ଡାକଥିଲେ ତ ମୁଁ ନିଜେ ତତେ ଆସିବାକୁ କହୁଥାଆନ୍ତି ।

ଅଗାଧୁ ॥ ଯା'ବେ ଉଆସ !!! କାନ୍ଥ ଫାଟି ଆଁ କଲାଣି । ତା' ମଝିରେ ବରଗଛଟାଏ—ଅଉ ନାଆଁ କଣ ନା ଉଆସ ।

ଗୁଚ୍ଛୁଚରଣ ।। କରେ ଘାଣ ତ ବଢ଼ି ବଢ଼ କଥା କହୁଲୁଣି ।

ଅଗାଧୁ ।। କହିବି ନାହିଁ କାହିଁକ ? ରଜାଘର ଆଉ କ ଥାଅ ଅଛୁ ଯେ ? ହାତୀଶାଳରେ ହାତୀ ନାହିଁ କ ଘୋଡ଼ାଶାଳରେ ଘୋଡ଼ା ନାହିଁ । ଭଙ୍ଗା ଗାଡ଼ିଟା ପଡ଼ିଚ ଯେ ମରାମତି ହେଇ ପାରୁନ ।

ଗୁଚ୍ଛୁଚରଣ ।। କରେ ମୁହଁରେ କଣ ଆଜ୍ଞା ବାଟୁଲି ବାଜୁନ ।

ଅଗାଧୁ ।। ଆଜିଯାକେ ତମ ମୁହିଁରେ ବାଟୁଲି ବାଜୁ ନଥିଲା । ଏବେ ଆମ ମୁହିଁ ଖୋଲିଚ ।

ଗୁଚ୍ଛୁଚରଣ ।। ହଇବେ ଅଗାଧୁ । ତୁ କଣ ତୋ ମାଲିକ, ସିଏ ପରା ଥିଲ ଦିନେ ଏଇ ଉଆସର ଚାକର । 'ସନା' ବୋଲି ଡାକଦେଲେ—ମଣିମା ଗୋଡ଼ତଳେ ଠିଆ ହଉଥିଲ ।

ଅଗାଧୁ ।। କେବେ ସିନା କ'ଣ ଥିଲ । ଆଜି ଆଉ ସେ ଦିନ ନାହିଁ ମ । ଏବେ ସନାତନ ବାବୁ ଜିଲ୍ଲା ପରିଷଦ ଚେଆର୍‌ମେନ୍ । ଯେତେ ଅଫିସର୍, କଲେକ୍‌ଟର, ପୁଲିସସାଇବ, ମନ୍ତ୍ରୀ ସବୁ ତାଙ୍କ ଦୁଆରେ ।

ଗୁଚ୍ଛୁଚରଣ ।। ହଁ ବେ ଚୋରି କଳାପୋତେଇ ପଇସାରେ ସନାତନ ଆଜ୍ଞା ବାବୁ ।

ଅଗାଧୁ ।। କଣ କହିଲୁ । ଚୋରି !!! କଳାପୋତେଇ !!!

ଗୁରୁଚରଣ ।। ହଁ ମୋର ଆଖି ଆଗରେ ଦରମା 'ସାତ'ରୁ ବଢ଼ି ବଢ଼ି ସତୁରି ହେଲ । ସେଇ ଟଙ୍କାରେ ଏତେ ବଡ଼ କୋଠା ବାଡ଼ି, ଗାଡ଼ି ସବୁ ହେଇଗଲା ? ସେଇକଥାରୁ ବୁଝୁଥିବୁ—ଚୋରି । ଦିନ ଦି ପହରେ ଚୋରି । ନିମକହାରମ୍ !

ଅଗାଧୁ ।। କଣ, ମୋର ଆଗରେ ମୋ ମାଲିକକୁ ଚୋର, ନିମକହାରାମ୍ କହୁଚୁ ?

ଗୁଚ୍ଛୁଚରଣ ।। ହଁ କହିବି । ଚୋର ସିଏ ସବୁଦିନେ ଚୋର । ଏବେ ବି କୋଟା, ପରମିଟ୍ କଳାଧନର କାରବାର ଚାଲିଚ ।

ଅଗାଧୁ ।। (ଚିତ୍କାର କରି) ଗୁଚ୍ଛୁଚରଣ !

ଗୁରୁଚରଣ ।। କଣ ? ଧମକ ଦଉଚୁ ? ଯା ତୋ ମାଲିକକୁ କହିବୁ—ଦୁନିଆଁ ଆଗରେ ସିନା ସିଏ "ସନାତନ ବାବୁ" । ହେଲେ ସେଇ

ଗୁମାସ୍ତା 'ମନା' । ଆଉ ତୁ ସେଇ ଘରର ଚାକର । ତୁ ଫେର ମୋ ଆଗରେ ଫୁଟାଣି ? ଯା...ବାହାର ଏଠୁ ।

ଅଗାଧୁ ।। ତୁ ମତେ ଘରୁ ବାହାର କରିଦବୁ ।

ଗୁରୁଚରଣ ।। ଅଲବତ୍ । ଯା—ନିକଲ୍ ଏଠୁ । ନିମକହାରାମର ଗୋଲାମ ତୁ ବି ଗୋଟାଏ ହାରାମଯାଦା ।

ଅଗାଧୁ ।। ମତେ ହାରାମଜାଦା କହିଲୁ ।

ଗୁରୁଚରଣ ।। ହଁ କହୁଛୁ । ହାରାମଜାଦା, ହାରାମଜାଦା, ହାରାମଜାଦା !

(ଗୁରୁଚରଣ ଉପରୋକ୍ତ କଥା ଜୋର୍ ଦେଇ କହିଲା ବେଳେ ଅଗାଧୁ ଆଡ଼କୁ ଆଗେଇ ଆସିଲେ । ଅଗାଧୁ ରାଗିଯାଇ ତାକୁ ଚଟକଣାଏ ମାରିଲା । ଗୁରୁଚରଣ ତଳେ ପଡ଼ିଗଲେ ।)

ଅଗାଧୁ ।। ହେଲା ? ତତେ ଏଇଆ ଦରକାର । ଆରେ ମୁହଁ କି ଟାଣ ଦେଖ । କିରେ ମୁଁ କଣ ଆସିଛି ଭିକ ମାଗିବାକୁ । ମୋ ମାଲିକର ପୁଅ ବାହାଘର, ନିମନ୍ତ୍ରଣ କାର୍ଡ଼ ନେଇ ଆସିଥିଲି, ମୋ ଉପରେ ତୋଡ଼ ଦେଖଉଚ । ହଉ ଏଇ ରହିଲା ତୁମ ରାଜାଙ୍କ ନିମନ୍ତ୍ରଣ-ପତ୍ର । ରାଜାସାହେବଙ୍କୁ କହିବୁ ଦଦରା ଗାଡ଼ିରେ ବସି ଭୋଜିଖାଇ ଯିବେ ।

(ରାଗରେ ଅଗାଧୁ ଗୁରୁଚରଣଙ୍କ ମୁହଁ ଉପରକୁ କାର୍ଡ଼ ଖଣ୍ଡିକ ଫୋପାଡ଼ି ଦେଇ ତମ ତମ ହେଇ ଚାଲିଗଲା ।)

(ପାଟିତୁଣ୍ଡ ଶୁଣି ସଂଗୀତର ଆଲାପ ବନ୍ଦ କରି ରାଜା ସୂର୍ଯ୍ୟଭାନୁ ବୈଠକଖାନାକୁ ଆସିଲେ)

ସୂର୍ଯ୍ୟଭାନୁ ।। କଣ ହେଇଚ ଗୁରୁଚରଣ ? କାହା ସାଙ୍ଗରେ ଏତେ ପାଟିତୁଣ୍ଡ ଚାଲିଥିଲା ?

ଗୁରୁଚରଣ ।। ହଜୁର, କିଏ ଆଉ ଏତେ ଦମାକ୍ ହବ ? ସେଇ ଦନା ଗୁମାସ୍ତା ଘର ଚାକର ଅଗାଧୁ ।

ସୂର୍ଯ୍ୟ ।। କାହିଁକି ଆସିଥିଲା ସିଏ ।

ଗୁରୁଚରଣ ।। ବାହାଘର ନିମନ୍ତ୍ରଣ-ପତ୍ର ଦବାକୁ ।

—ପର୍ଦ୍ଦିଧରଣ—

ସୂର୍ଯ୍ୟ ।। ବାହାଘର ?

(ଗୁରୁଚରଣ କାର୍ଡ଼ଟି ରାଜାଙ୍କ ହାତକୁ ବିନୀତ ଭାବେ ବଢ଼ାଇଦେଲା)

ସୂର୍ଯ୍ୟ ।। ବାଃ, ଖୁବ୍ ଦାମୀ କାର୍ଡ଼ ଛପେଇଛ । (ପଢ଼ିଲେ) ଓ, ସନାତନର ପୁଅ ବାହା ହଉଛ !!! ଏତେଡ଼ ବଡଟେ ପିଲା ଥିଲା । ସ୍ୱା'ଭିତରେ ତା'ର ବାହାହବା ବୟସ ହେଇଗଲାଣି ? ହଉ ଗୁରୁଚରଣ ତା' ଘରକୁ ବେଶ୍ୱର କମିତ ଯିବ ବ୍ୟବସ୍ଥା କର ।

ଗୁରୁଚରଣ ।। ବେଶ୍ୱର !!! ତା ଘରକୁ ଆସି, ମୋତେ ଅପମାନ କରି ମାଡ଼ ମାରି ଚାଲିଗଲା । ପୁଣି ବେଶ୍ୱର ? ଶଳା ଗ୍ରେଟ ଲୋକ !

ସୂର୍ଯ୍ୟଭାନୁ ।। ସେମାନେ ଆଉ ଗ୍ରେଟ ନୁହଁନ୍ତି ଗୁରୁଚରଣ । ସେମାନେ ଆଜିର ଦୁନିଆଁରେ ବଡ଼ ଲୋକ ।

ଗୁରୁଚରଣ ।। ଆଉ ଆମେ ?

ସୂର୍ଯ୍ୟଭାନୁ ।। ଆମ ବଡ଼ ଲୋକର ଦିନ ସରିଯାଇଛି ଗୁରୁଚରଣ । ଆମେ ଆଜି ଗ୍ରେଟ । ଆଜିକାଲିର ନୂଆ ଦୁନିଆଁରେ ଆମେ ସବୁଠୁ ଗ୍ରେଟ ।

ଗୁରୁଚରଣ ।। ହଁ ଦିନ ବଦଳିଛି । ଲକ୍ଷ୍ମୀ ଅଉ ଏ ଘରେ ନାହାନ୍ତି । ତା ବୋଲି ଏଇ ଗାଁର ଟୋକାଏ ଆମକୁ ଇମିତ ଅପମାନ କରିବେ ?

ସୂର୍ଯ୍ୟଭାନୁ ।। ହଁ ଗୁରୁଚରଣ, କରିବେ । ତାଙ୍କର ଦିନ ଯେତେବେଳେ ଆସିଛି, ସେମାନେ ସବୁ କରିବେ । ଆଉ ଆମକୁ ସବୁ ସହିବାକୁ ପଡ଼ିବ ।

ଗୁରୁଚରଣ ।। ତୁମ୍ଭଙ୍କ ତୁଣ୍ଡରୁ ଆଜି କଣ ଶୁଣୁଛି !!! ନା, ନା, ଇମିତ କଥା ମୁଁ ଶୁଣିପାରିବିନି—ନା ଶୁଣିପାରିବିନି ।

(ଗୁରୁଚରଣ ମନରେ ଆଘାତ ନେଇ ଭିତରକୁ ଚାଲିଗଲା ।)

ସୂର୍ଯ୍ୟଭାନୁ ।। ମୋ କଥା ଶୁଣି ଗୁରୁଚରଣ ଆଶ୍ଚର୍ଯ୍ୟ ହଉଛି । ମୁଁ କିନ୍ତୁ ଆଶ୍ଚର୍ଯ୍ୟ ହଉନି । କାହିଁକି ହେବି ? ସେଇ ଚିରନ୍ତନ ସତ୍ୟ "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଭିକାରୀ" ଆଜି ସତ ହେଉଛି । ମୋ ଜମିଦାରୀ 'ସନା'ର ଘରକୁ ଗୁରୁଚରଣକୁ ମାଡ଼ ମାରି ଚାଲିଗଲା । ମୁଁ ଶୁଣିଲି - କିଛି କରି ପାରିଲି ନାହିଁ । ମୁଁ ଠିକ୍ ଜାଣେ, ଏ ମାଡ଼ ଗୁରୁଚରଣକୁ ନୁହେଁ—ଏ ମାଡ଼ ମତେ (ପାଗଳଙ୍କ ପରି ହସି

ଉଠିଲେ) ରାଜା ସୂର୍ଯ୍ୟଭାନୁ ତମେ ଆଜି ଅସ୍ତମିତ ହେଇଯାଇଚ ।
(ପୁଣି ହସି ଉଠିଲେ ।

(ଏତକ ବେଳେ ବୈଠକଖାନାରୁ ତଳକୁ ଯାଇଥିବା ପାହାଚ ଦେଇ କାହାର ନୂପୁରଧ୍ୱନି ଶୁଭିଲା । ରଜାଙ୍କ ହସ ବନ୍ଧ ହେଇଗଲା । ସେ ବିସ୍ମୟରେ ଚାହିଁ ରହିଲେ ।)

ସୂର୍ଯ୍ୟଭାନୁ ॥ କାହାର ନୂପୁର ଧ୍ୱନି !!! କିଏ ? କିଏ ଆସିଚ ?
(ନୟନାବାଈର ନୂପୁର ଜଡ଼ିତ ପାଦ ସେଇ ପାହାଚରେ ରହିଗଲା ସୂର୍ଯ୍ୟଭାନୁ ଲକ୍ଷ କଲେ କେହି ଜଣେ ପାହାଚରେ ଓଢ଼ଣାଟାଣି ଛିଡ଼ା ହେଇଚ ।)

ସୂର୍ଯ୍ୟଭାନୁ ॥ କିଏ ? କିଏ ସେଠି ?

ନୟନା ॥ (ଓଢ଼ଣା ଭିତରୁ) ହୁଜୁରଙ୍କ ଦାସୀ । ମୋତେ ଚିହ୍ନି ପାରୁ ନାହାନ୍ତି ?

ସୂର୍ଯ୍ୟଭାନୁ ॥ ପରିଚୟ ଦିଅ ।

ନୟନା ॥ ମୁଁ ନୟନା । କେଶରବାଈ ଝିଅର ନୟନାବାଈ ।

ସୂର୍ଯ୍ୟଭାନୁ ॥ (ମନେ ପକାଇ) ନ-ୟ-ନା, ସୁନୟନା !!! ତୁ ଏବେ ବି ସେଇଠି ଅଛୁ ? ଆ ଭିତରକୁ ଆ—ଚିହ୍ନିବି କେମିତି ? ତୋ ସାଙ୍ଗରେ ଦେଖା ହେଇଥିଲା ଆଜକୁ କୋଡ଼ିଏ ବର୍ଷ ତଳେ । ଆରେ ଛିଡ଼ା ହେଲୁ କାହିଁକି ? ବସ । ବସ । (ନିଜେ ସୂର୍ଯ୍ୟଭାନୁ ଗୋଟିଏ ପୁରାତନ ରାଜକୀୟ ସୋଫା ଉପରେ ବସି ପଡ଼ିଲେ । ନୟନାବାଈ ତାଙ୍କ ପାଦ ପାଖରେ ବସି ପାଦ ଚିପି ଦେଲା ।) ତୋର ସବୁ ଭଲ ତ ସୁନୟନା ।

ନୟନା ॥ ଭଲ ଆଉ କଣ ହୁଜୁର ? ଆପଣଙ୍କ ଦୟାରେ ଖାଲି ବଞ୍ଚିଛି । ହେଲେ ଆଉ ମୋ ଆଖିରେ କଜ୍ଜଳ ନାହିଁ କି ଓଠରେ ରଙ୍ଗ ନାହିଁ । ଆପଣଙ୍କ ସୁନୟନା ଆଜି ଶେଷ ହେଇ ଯାଇଚି ହୁଜୁର ।

ସୂର୍ଯ୍ୟଭାନୁ ॥ ରାଜା ସୂର୍ଯ୍ୟଭାନୁ ମଧ ଆଜି ଶେଷ ହେଇଯାଇଚି ସୁନୟନା । ଦେଖୁଚୁ ତ—ମୋ ଉଆସ କେମିତି ଭାଙ୍ଗି ପଡ଼ିଲାଣି । ହେଇଟି ଦେଖ୍ ସେଇ କାନ୍ଥ ଭିତରେ ବରଗଛର ଚେର କାନ୍ଥ ଫଟେଇ କେମିତି ବଢ଼ି ଉଠୁଚି । ସେ ଦୁହେଁ ଏ ଉଆସ ଭାଙ୍ଗିଯାଉ—ଏ ପୁରୁଣା ଆଭିଜାତ୍ୟ ଧୂଳିରେ ମିଶିଯାଉ ।

—ସଛିଁଢଶଶ—

ନୟନା ।। କିନ୍ତୁ ଏମିତ କାହିଁକି ହେଲା ଭାଇ !!! ହଠାତ୍ କାହିଁ ଯୁଗଟା ଇମିତି ବଦଳିଗଲା ?

ସୂର୍ଯ୍ୟଭାନୁ ।। ସବୁଦିନେ ସବୁ କିଛି ସମାନ ରହେନା ସୁନୟନା । କୋଡ଼ିଏ ବର୍ଷ ତଳେ ତୋତେ ମୁଁ ଯେମିତି ଦେଖିଥିଲି—ଆଜି କଣ ତୁ ସେଇଆ ଅଛୁ ? ଠିକ୍ ସେମିତି ସମୟର ପାହାଚରେ କେତେ କଣ ବଦଳି ଯାଇଚି । ରାଜା ସୂର୍ଯ୍ୟଭାନୁ ଆଜି ଭିକାରୀ । ଆଉ ମୋ ଗୁମାସ୍ତା ସନାତନ ଆଜି ରାଜା । ଦେଖ୍ ହେଇ ମୋ ଉଆସ ଆଗରେ ମଥା-ଟେକି ଛିଡ଼ା ହୋଇଚି ତା'ର ତିନିମହଲା କୋଠା । ବିଜୁଳି ଆଲୁଅରେ କେମିତି ଝଲମଲ୍ କରୁଚି ସେ କୋଠା । ଜାଣିଚି ଆଜି ତା ପୁଅର ବାହାଘର । ସେଇଥି ପାଇଁ ତା ଦୁଆରେ କେତେ ଗାଡ଼ି, ମଟର । କେତେ ଭିଡ଼ । ସବୁ ଅଫିସର, ମନ୍ତ୍ରୀ ଆଜି ତା ଘରେ । ସାରା ରାତି ସେମାନେ ଉତ୍ସବ ପାଳନ କରିବେ । ଆଜି ଭଲି ଦିନରେ ଯଦି ମୁଁ ଚିତ୍କାର କରି କହେ— "ସନା" ମୋର ଗୁମାସ୍ତା ଥିଲା—ଆଉ ମୋ ଅମାରରୁ ଧାନ ଚୋରି କରି ଧରାପଡ଼ି ସିଏ ବରଖାସ୍ତ ହୋଇ ଥିଲା—ମୋ କଥା କିଏ ବିଶ୍ୱାସ କରିବ ? ଦିନ ବଦଳି ଯାଇଚି ସୁନୟନା, ସବୁ ଓଲଟ ପାଲଟ ହୋଇଯାଇଚି ।

ସୁନୟନା ।। କିନ୍ତୁ ଏମିତି କେତେ ଦିନ ଚାଲିବ ଭାଇ ?

ସୂର୍ଯ୍ୟଭାନୁ ।। ରାଜା ଦୁର୍ନୀତି କଲା ବୋଲି ଜନତା ରାଜତନ୍ତ୍ର ଭାଙ୍ଗି ଗଣତନ୍ତ୍ର ପ୍ରତିଷ୍ଠା କଲା । ପୁଣି ଆଜି ଗଣତନ୍ତ୍ର ଦୁର୍ନୀତିଗ୍ରସ୍ତ ହେଲେ ଲୋକେ ପୁଣି ତା' ବିରୁଦ୍ଧରେ ବିଦ୍ରୋହ କରିବେ । ସେଇ ବିଦ୍ରୋହ ଭିତରୁ ଜନ୍ମ ନେବ —ଆଉ କିଛି ନୂତନ ଧରଣର ଶାସନପଦ୍ଧତି । ଛାଡ଼୍—ସେ ସବୁ ଭାବି ଲାଭ ନାହିଁ । ଯଦିବା କିଛି ପରିବର୍ତ୍ତନ ଆସେ ସେତେବେଳକୁ ଆମେ ଆଉ ନ ଥିବା । ଏବେ କହତ ତୋର ଦିନ ଗୁଡ଼ା କିମିତି ଯାଉଚି ?

ନୟନା ।। କେଶରବାଈ ଗଲାରେ ଅଉ ସତ୍ତେ ହେଲେ ଭିଡ଼ ନାହିଁ ଭାଇ । ଅଗ-ଭଳି ଗରାଖ ବି ନାହାନ୍ତି । ନାଚ, ଗୀତ ଦେଖୁଚି କିଏ ? ଖାଲି ଦେହଟାକୁ ନେଇ କି ବେପାର ହବ ? ଝିଅଟା ମୋର ବଡ଼ ହେଲାଣି ଯେ, ତା' ପାଇଁ ପହିଲି ରାତିର ଗରାଖଟିଏ ଖୋଜୁଚି—ମିଳୁନାହିଁ ।

—ଅନ୍ତରାଳ—

ସୂର୍ଯ୍ୟଭାନୁ ।। ହେଲେ, ପଇସାବାଲା ଲୋକଙ୍କର ତ ଅଭାବ ନାହିଁ ସୁନୟନା । ଏଇ ଯେଉଁ ଏତେ ନୂଆ କୋଠା ଉଠୁଛି, ଏତେ ଗାଡ଼ି ଛୁଟୁଛି— ସେମାନେ କଣ ତୋ ଘରେ ପାଦ ଦଉ ନାହାନ୍ତି ?

ନୟନା ।। ନା, ପାଦ ଦବାର ପ୍ରଶ୍ନ ନାହିଁ । ସେମାନେ ତ ପ୍ରଭୁଙ୍କ ପରି ନୁହନ୍ତି । ସମସ୍ତଙ୍କର ଲୋଭ ପଇସା । ଖାନଦାନୀ, ବୁନିଆଦ ସେମାନେ କଣ ବୁଝିବେ ? ମୋ ଝିଅକୁ ମୁଁ ସେମାନଙ୍କ ହାତରେ ଦେଇ ପାରିବି ନାହିଁ ପ୍ରଭୁ ।

ସୂର୍ଯ୍ୟଭାନୁ ।। ତୁ ଯାହା ଖୋଜୁଚୁ ପାଇବୁ ନାହିଁ ସୁନୟନା । ସେ ପୁରୁଣା ଦିନ— ସେଇ ବୁନିଆଦ ମଣିଷ ଆଉ ପାଇବୁ ନାହିଁ ।

ନୟନା ।। ଅନେକ ଆଶା ନେଇ ଆସିଥିଲି ପ୍ରଭୁ । ଭାବିଥିଲି—ଆପଣ ହେଲେ କାହାରି ସନ୍ଧାନ ଦେବେ । ଭାବି ନ ଥିଲି ପ୍ରଭୁଙ୍କ ମୁହଁରୁ ଏମିତି କଥା ଶୁଣିବି ।

ସୂର୍ଯ୍ୟଭାନୁ ।। ତୁ ଭୁଲିଯା ନୟନା । ଆଜିର ଏଇ ବର୍ତ୍ତମାନ ଭିତରେ ଅତୀତର ସେଇ ଦିନ ଗୁଡ଼ାକ ହଜାଇ ଦେ ।

ନୟନା ।। ନା, ପ୍ରଭୁ ମୁଁ ପାରିବିନି । ଆପଣ ଖାଲି ମତେ ଟିକିଏ ପାଦଧୂଳି ଦିଅନ୍ତୁ । ସେତିକି ନେଇ ମୁଁ ଯାଏ ।

(ନୟନା ପାଦଧୂଳି ନେଇ ଚାଲିଗଲା)

ସୂର୍ଯ୍ୟଭାନୁ ।। ଦିନ ଏମିତି ଚାଲିଯିବ ସୁନୟନା । ଖୋଜି ଖୋଜି ତୁ ନିରାଶ ହେବୁ । କିନ୍ତୁ ଯାହା ଖୋଜୁଚୁ ଆଉ ପାଇବୁ ନାହିଁ । ଏଇ ମତେ ଦେଖ୍ । ମୁଁ ଆଜି କିଛି ପାଉନି । ତେବେ ବି ବଞ୍ଚିଛି । ଖୁବ୍ ଖୁସିରେ ଅଛି । ବେଶ୍, ଦିନ ଗୁଡ଼ାକ ଚାଲିଯାଉଚି । (ହସି ଉଠିଲେ)

ସୂର୍ଯ୍ୟଭାନୁ ।। ଗୁରୁଚରଣ, ଗୁରୁଚରଣ ।

ଗୁରୁଚରଣ ।। ପ୍ରଭୁ । (ବିନୀତ ଭାବେ ଆସି ଠିଆହେଲା)

ସୂର୍ଯ୍ୟଭାନୁ ।। କଟରେ 'ସନା' ପୁଅର ଆଜି ବାହାଘର । ତା' ପାଇଁ ବେଭାର ନେଇଯା —ଯା' ଡେରି କରନା ।

(ଗୁରୁଚରଣ ତଥାପି ମନମାରି ଛିଡ଼ା ହେଲା)

—ଅଣଗୁଳାଣ—

ସୂର୍ଯ୍ୟଭାନୁ ।। କରେ ? ତା' ଗୃହକୁ ଆସି ସଭାରେ କ'ଣ ଦି' ପଦ କହିଦେଲା ବୋଲି ତା' ଘରକୁ ବେଭାର ଯିବନି ? ଅରେ ମୁଁ ତ ମୋ ପୁଅକୁ ବାନ୍ଧିକରି ପାରିଲି ନାହିଁ । ମୋ ସାଙ୍ଗରେ କଳି କରି ସିଏ ଘରଛାଡ଼ି ଚାଲିଗଲା । ଆଜି 'ସନା' ପୁଅ ବାହା ହେଉଚି । ସିଏ କଣ ମୋ ପୁଅ ନୁହେଁ । ଏଇଠି ଏଇ ଛାମୁଆସରେ ହସି ଖେଳି ସିଏତ ମଣିଷ ହୋଇଚି ।

(ଭାବପ୍ରବଣତାରେ ଅଶ୍ରୁସଜଳ ହୋଇ ଉଠିଲେ ସୂର୍ଯ୍ୟଭାନୁ)

ଗୁରୁଚରଣ ।। ଯାଉଛି ସାମୁ । (ଚାଲିଗଲା ଭିତରକୁ)

ସୂର୍ଯ୍ୟ ।। ଅରେ ମନଦୁଃଖ କରୁଚୁ କାହିଁକି ? 'ସନା' ପରା ନିମନ୍ତ୍ରଣ କରିଚି । ତୁ ଯା । ମୁଁ ବି ଯିବି । ସମସ୍ତଙ୍କ ଭିତରେ ବସି ଭୋଜି ଖାଇ ଆସିବି । ରାଜା ସୂର୍ଯ୍ୟଭାନୁ ମରି ଯାଇଛି, ଆଜି ମୁଁ ଜଣେ ସାଧାରଣ ମଣିଷ । ଗଣତନ୍ତ୍ରର ନିଃସ୍ୱ-ନାଗରିକ ।

———

— ସମ୍ପୂର୍ଣ୍ଣ —

# ଦ୍ୱିତୀୟ ଅଙ୍କ

॥ ଦ୍ୱିତୀୟ ଦୃଶ୍ୟାଞ୍ଚଳର ସାଜସଜା ॥

ରାଜାଙ୍କ ପାଖରୁ ଫେରିଲା ପରେ ନୟନା ଆଉ କୌଣସି ଆଶା ନ ଦେଖି ଉଦାସ ହୋଇ ପଡ଼ିଛି । ସିଧମତ ଭାଙ୍ଗି ପଡ଼ିଛି କହିଲେ ଚଳେ । ବେଶଭୂଷାରେ ଆଗଦିନର ଯତ୍ନ ନାହିଁ । ମଞ୍ଚ ଆଲୋକିତ ହେଲା ବେଳକୁ ପୃଷ୍ଠ ଭୂମିରୁ ଶୁଭୁଥିଲା କାଳୀ-ମନ୍ଦିରର ଅଳତି ଧ୍ୱନି । ନୟନା ଉଦାସ ଆଖିରେ ଗୋଟିଏ ତକିଆକୁ ଆଉଜି ବସିଛି ବୈଠକଖାନାରେ । ଏତିକି ବେଳେ କେଶର-କାଶି ଗଳା ଦେଇ ଆସିଲେ ରସିକ ମୋହନ । ନୟନାକୁ ନୀରବରେ ବସିଥିବାର ଦେଖି ତାଙ୍କର ସ୍ୱଭାବ-ସୁଲଭ ଭଙ୍ଗୀରେ ଆରମ୍ଭ କରି ଦେଲେ ଗ୍ରାମ୍ୟ ଚଉପଦୀ ।

ରସିକ ॥ ଆହା ବିରହିଣୀ ରାଇ । ପୁଣି କୋଉ ନାଗରଙ୍କ ପାଲରେ ପଡ଼ିଲୁ କାଲେ ସହି ? ହଇଲେ ମୁଁ ଥାଉଁ ଥାଉଁ, ସଞ୍ଜ ପହରେ ମୁହଁଟାକୁ ଇମିତି କଳାହାଣ୍ଡିଆ ମେଘ କରିଚୁ ? (ପୁଣି ଅସମାପ୍ତ ଗୀତ ଆରମ୍ଭ କଲେ)

[ନୟନା ଝୁବ୍ ଭାବପ୍ରବଣ ହୋଇ ବସିଥିଲା । ରସିକ ମୋହନଙ୍କର ଏଇ ପରିହାସ ତା' ଆଖିରୁ ଲୁହ ଝରେଇ ଦେଲା ।]

ରସିକ ॥ ଆଲୋ ଇଏ କଣ ? କଳା ହାଣ୍ଡିଆ ମେଘରୁ ସାଙ୍ଗେ ସାଙ୍ଗେ ଟପ୍ ଟପ୍ ବର୍ଷା !!! କଣ ହେଇଚି, ସତ କହ । ତୋ କାନ୍ଦ ଦେଖି ମୋ ଛାତି ଫାଟି ଯାଉଚି ।

—ଏକରୂଳାଶ—

ନୟନା ।। ରୁହ, ମତେ ଆଉ ସେ ଅଙ୍ଗାପୁଡ଼ା ସୁଖ ଲଗୁନି ।

ରସିକ ।। କଲେ ହେଉଛ କ'ଣ । କହୁନ—ଉଁ ଢଙ୍ଗ ।

(ରସିକ ନିଜ ହାତରେ ଲୁହ ପୋଛି ଦେଲେ)

ନୟନା ।। କାନ୍ଦିବି ଆଉ କାହା ପାଇଁ ? ଝିଅଟା ଆସି ଏଡ଼େଟିଏ ହେଲା—ତା' ପାଇଁ କୋଉଠୁ କିଛି ଯୋଗାଡ଼ କରି ପାରିଲ ନାହିଁ । ତମେ ଟିକିଏ ହେଲେ, ସେ କଥା ନେଇ ମୁଣ୍ଡ ଖେଳାନ୍ତ ।

ରସିକ ।। ଆଲୋ ଭାବିବା କଣ ? ଲାବଣ୍ୟ ଭଳି ଝିଅ ପାଇଁ ଫେର୍ ପାତ୍ର ଅଭାବ ହବ ? ଠାକୁରେ ଯୋଉଠୁ ହଉ ଜୁଟେଇ ଦେବେନା ।

ନୟନା ।। କେବେ ଅଉ ? କେତେ ଦିନ ସିଏ ଅଭିଆଡ଼ୀ ହୋଇ ରହିଥିବ ?

ରସିକ ।। ମୁଁ ସବୁ ଜାଣେ । ତୁ ସେଇ ଘରକୁ ଯାଇଥିଲୁ । ସେଇଠୁ କ'ଣ ଶୁଣି ବିଗାଡ଼ି ହୋଇ ଆସିଚୁ । ଅଲୋ ଲବଣ୍ୟ ଭଳି ଝିଅ କୋଟିକରେ ଗୋଟିଏ । ରୂପ ଯେମିତି ଗୁଣ ବି ସେମିତି । ଏଇ ବୟସରେ ସିଏ ଯେତେ ବିଦ୍ୟାରେ ପାରଙ୍ଗମ ହେଲଣି, ତୋ ଜାଣିବାରେ ଇମିତି କେହି ହୋଇଥିଲେ ନା ? ନଈ ନ ଦେଖି ନଙ୍ଗଳା ହଉଚୁ କାହିଁକି ? ତା' ବର ଆପେ ଆସି ଜୁଟିବ । ବୁଝିଲୁ ?

(ନୟନାର ଭାବରେ ବିଶେଷ ପରିବର୍ତ୍ତନ ଲକ୍ଷ୍ୟ ନ କରି)

ରସିକ ।। ଦେଖ, ସବୁବେଳେ ତୁ ଯଦି ଇମିତି ମନମାରି ବସିବୁ ମୁଁ ଆସିବି ନାହିଁ କହି ଦଉଚି । ଯା' କାଳୀ ମନ୍ଦିରରେ ଆଳତି ହଉଥିବ—ଦେଖି ଆସିବୁ ଯା—ମୁଣ୍ଡିଆ ମାରି ମନ କଥା କହି ଆସିବୁ । ମାଆ ମନକଲେ ତୋ ଦୁଃଖ କାଲି ସୁଦ୍ଧା ଯିବ ।

(ନୟନା ଯନ୍ତ୍ରଚାଳିତ ପରି ଭିତର ଘରକୁ ଚାଲିଗଲା)

ରସିକ ।। ପାଟ, ଏ ପାଟ । କଲେ କୁଆଡ଼େ ମଲୁ । କେହି କଅଣ ଦେଖା ନାହାନ୍ତି । (ବିରକ୍ତ ହୋଇ ନିଜେ ଭିତରକୁ ଯାଇ ପାନ ସଜ ଆଣି ତଳେ ଚକା ପକେଇ ପାନ ଭାଙ୍ଗି ବସିଲେ)

ରସିକ ।। (ମନକୁ ମନ) ଯାଃ, ଆଜି ଏଠିକି ଆସିବ ନାହିଁ । ଘରେ ମାଇପ ପିଲାଛୁଆଙ୍କ ଜଞ୍ଜାଳ । ଏଠିକି ଆସୁଚ ଟିକିଏ ମନ ବହଲେଇବା

ପାଇଁ । ଏଠି ବ ଶାନ୍ତ ନାହିଁ । ସେଇ କେଁ କାଁ, ଶୁଁ ଶାଁ—ଛୁଃ ଛୁଃ । ଆଉ ଏଠିକି ଆସି ଲଭ କଣ ? ଯିବ—ଗୃହିଯିବ—

(ଲଲ୍ଲୁ ଏତିକି ବେଳେ ବାହାରୁ ଆସିଚ)

ଲଲ୍ଲୁ ॥ ପ୍ୟେ କୈସେ ବାତ୍ ବାବୁଜୀ । ଆପ୍ ଚଲେ ଯାୟେଙ୍ଗେ, କାହାଁ ଯାୟେଙ୍ଗେ—ମେରେକୋଭି ଆପକା ସାଥ ଲେ ଚଲିୟେ ।

ରସିକ ॥ ତୁ ପୁଣି ମୋ ସାଙ୍ଗରେ ?

ଲଲ୍ଲୁ ॥ କଉଁ ? ଆପ ଯାହାଁ ଯାୟେଙ୍ଗେ, ମୈ ଭି ଉହାଁ ଯାଉଙ୍ଗା—

ରସିକ ॥ ଚୁପ୍ । ତୁ ଫେର ମୋ ସାଙ୍ଗରେ ସେଠି ରହିବୁ ?

ଲଲ୍ଲୁ ॥ କାହିଁକି ବାବୁଜୀ, ମେରା କ୍ୟା କସୁର ?

ରସିକ ॥ ନା, କିଛି କସୁର ନାହିଁ । ଅଚ୍ଛା ତୁ ତ ମୋ ସାଙ୍ଗରେ ଯିବୁ । କହିଲୁ ମୁଁ କଏ ?

ଲଲ୍ଲୁ ॥ ଆପ୍‌ତୋ ରସିକବାବୁ ହୈ ।

ରସିକ ॥ ଆଚ୍ଛା ମୁଁ ଏଠିକି କାହିଁକି ଆସେ ଜାଣିଚୁ ?

ଲଲ୍ଲୁ ॥ (ଅଶ୍ଳୀଳ ଇଙ୍ଗିତରେ ଆଖିମାରି) ଔର ନୟନାବାଈକି ଦେଖ୍‌କର ମୈ ଅଉର୍ କ୍ୟା ?

ରସିକ ॥ ମୂର୍ଖ, ଉଲ୍ଲୁକା ପଠା ।

ଲଲ୍ଲୁ ॥ କ୍ୟା ।

ରସିକ ॥ ତୋ ମୁଣ୍ଡରେ କିଛି ନାହିଁ ।

ଲଲ୍ଲୁ ॥ ଠିକ୍ ହୈ । ଲେକିନ୍ ଆପ୍ ସୁମଝେ କୋଶିଶ୍ କରକେ ଥୋଡ଼ା ସମଝା ଦିଜିୟେନା—

ରସିକ ॥ ଆଚ୍ଛା ହଉ ଶୁଣ । ଆଜିକାଲି ଗୃହଆଡ଼େ "ସାମ୍ୟବାଦ" ନେଇ ଖୁବ ପାଟିତୁଣ୍ଡ ଗୃହିଚ । ତା'ର ଅସଲ ମୂଳଦୁଆ ହେଲା ଏଇ ଗଣିକା-ବସ୍ତି । ଏଠି ସମସ୍ତେ ସମାନ । ରାଜା ପ୍ରଜା ସମସ୍ତେ ସମାନ ଆଦର ଅଭ୍ୟର୍ଥନା ପାଆନ୍ତି । ପୁରାଣରେ ଲେଖା ଅଛି ଋଷ୍ୟଶୃଙ୍ଗ ମୁନି ପିଙ୍ଗଳା-ବେଶ୍ୟାକୁ ଜଣେ ପୁରୁଷଭାବରେ ଗ୍ରହଣ କରିଥିଲେ । ଇତିହାସ କହେ ମଗଧ ରାଜସଭାରେ ଗଣିକା 'ଅମ୍ରପାଳି' ଜଣେ ପଟ୍‌ମର୍ଶଦାତା

ଘରରେ ଅତି ଉଚ୍ଚସ୍ଥାନ ଅଧିକାର କରିଥିଲେ । ଅଉ ଅଙ୍କା ମଧ୍ୟ ହିନ୍ଦୁ ଶାସ୍ତ୍ରର ପରମ୍ପରା ଅନୁଯାୟୀ ଦୁର୍ଗାପୂଜା ପାଇଁ "ବେଶ୍ୟାଘରର ମାଟି" ଏକ ପବିତ୍ର ପୂଜା ସାମଗ୍ରୀ ।

(ଲଲ୍ଲୁ କିଛି ବୁଝି ନ ପାରି, ବୋକାଙ୍କ ଭଳି ଅନେଇଲା)

ରସିକ ।। କରେ ଇମିତି କଣ ଅନେଇଚୁ ?

ଲଲ୍ଲୁ ।। କୁଛ ସମଝା ନେହିଁ ବାବୁଜୀ ।

ରସିକ ।। ଘୁଷୁଘା !!! ତୁ ଗୋଟେ ଘୁଷୁଘା ।

ଲଲ୍ଲୁ ।। (ଅପମାନିତ ହୋଇ) ବାବୁଜୀ ।

ରସିକ ।। କେଶରବାଈ ଗଲାରେ ଦଲାଲୀ କରି ତୋ ମୁଣ୍ଡରେ ଅଉ କିଛି ନାହିଁ । ତୁ କୋଉଠୁ ଏ ସବୁ ତତ୍ତ୍ୱ ବୁଝିବୁ । ଯା, ସଞ୍ଜ ହେଲଣି— ଗରାଖ ଖୋଜିବୁ ।

ଲଲ୍ଲୁ ।। ମୈ ଦଲାଲ ହୁଁ, ଲେକିନ୍ ଇମାନଦାର ହୁଁ । କଭି ମୈ ଗରାଖ ନେହିଁ ଧୁଣ୍ଡିତା । ଗରାଖ ମୁଝେ ଧୁଣ୍ଡିତେ ହୈଁ । ଲେକିନ୍ ଏକ ମହିନା ହୁଆ କାରବାର ବିଲ୍‌କୁଲ୍ ବରବାଦ୍ ।

ରସିକ ।। କରେ, କାରବାର ବନ୍ଦ କାହିଁକି ?

ଲଲ୍ଲୁ ।। ନୟନାବାଈ ଉନ୍ସୋ ଘରକୁ ଯାଇ, ତା ମଥାଟାକୁ ବିଗାଡ଼ି ଦେଇ ଆସିଚ । ନାଚ, ଗାନା ସବକୁଛ ବନ୍ଦ ହୋଇ ଯାଇଛି ବାବୁଜୀ ।

ରସିକ ।। ତା ଝିଅର ପଢ଼ିଲା ପାଇଁ ଗୋଟେ ଭଲ ଗରାଖ ଖୋଜୁଚି ସିଏ । ତୁ ଗୋଟେ ଭଲପିଲା ଯୋଗାଡ଼ କରି ଦଉନୁ ।

ଲଲ୍ଲୁ ।। ଅପକୀ କସମ୍ ବାବୁଜୀ—କିତ୍ନା ଲୋକ ଆଣିଲି । ଲେକିନ୍ ନୟନାବାଈକୁ ପସନ୍ଦ ନେହିଁ ।

ରସିକ ।। ହଁ ମୁଁ ଶୁଣିଚି । ଯୋଉମାନଙ୍କୁ ସବୁ ଆଣିଚୁ—ଯେତେକ ଚୋର, ଡକାୟତ, ସ୍ମଗଲର ।

ଲଲ୍ଲୁ ।। ଆଜ୍‌କାଲ୍ ଓହି ଲୋଗ ତ ବଡ଼େ ଲୋଗ ହୈ ବାବୁଜୀ ।

ରସିକ ।। କଣ କହିଲୁ ? ଆଜିକାଲି ଚୋର, ଡକେଇତ, କଳାପୋଛିଆ ସବୁ ବଡ଼ ଲୋକ !

—ଚଉସଠକଳା—

ଲଛ୍ମି ॥ ହଁ ବାବୁଜୀ । ମୁଝେ ବୁର୍ ମତ ସମଝିଏ ।

ରସିକ ॥ ନୟନାବାଈ ନ ଜାଣି ତୋ ଉପରେ ରାଗୁଚ—

ଲଛ୍ମି ॥ ଆପ୍ କେବ୍ ଇନ୍‌କୁ ସମଝାଇୟେ ବାବୁଜୀ । ଆରେ ବାବା ହାମ-ଲୋଗୌଁକୋ ପୈସା ଚାହିୟେ ପୈସା । ଖାନଦାନୀ, ବୃନ୍ଦସ୍ୱଦ ଆଜ୍-କାଲ କୌନ୍ ପୁଛତା ହୈ ? (ଖୋସାମତ କରି ଗୋଡ଼ ଚପୁ ଚପୁ) ଆପ ଥୋଡ଼ାସା କୋସିଶ୍ କଜିଏ ବାବୁଜୀ । ନୟନାବାଈକୁ ସମଝା-ଦଜିଏ । ଏକ୍‌ବାର୍ ଧନ୍ଦା ସୁରୁ ହୋ ଯାନେସେ ରୋଜ ରୋଜ ନୟା ପାର୍ଟି ଆୟେଗା । କିତନା ରୁପିୟା ଦେଗା ।

ରସିକ ॥ (ଲଛ୍ମିକୁ ଠେଲି ଦେଇ) ହଁ ତୋ ରୋଜଗାରଟା ଟିକିଏ ମାନ୍ଦା ହୋଇ ଯାଇଚକିନା—

ଲଛ୍ମି ॥ ଔର କ୍ୟା । ପୈସା ନେହିଁ ତୋ ଜିନ୍ଦଗୀ କେହି ବାବୁଜୀ ।

(ଏତିକି ବେଳେ ଦ୍ରୁତ ଗତିରେ ବାହାରୁ ଆସିଲେ, ଲବଣ୍ୟ ଓ ପାଠ । ସେମାନେ ସିଧା ଅନ୍ଦର ମହଲକୁ ପଶିଗଲେ)

ରସିକ ॥ କଲେ ଲବଣ୍ୟ କଣ ହେଲା ? ତୁ ଇମିତି ଧଇଁ ସଇଁ ହୋଇ ଆସୁଚୁ ଯେ ? ପାଠ କଣ ହେଲା କଲେ ?

(ପାଠ ଭିତରୁ ଫେରି ଆସିଲା)

ପାଠ ॥ କଣ କହିବି ବାବୁ ଆଜିକାଲି ଏ ବାଡ଼ପଡ଼ା ଟୋକା ଗୁଡ଼ାକ ଯାହା ହେଲେଣି, ଝିଅ ପିଲାଏ ଆଉ ବାହାରକୁ ଗୋଡ଼ କାଢ଼ି ପାରିବେ ନାହିଁ ।

ରସିକ ॥ ତୁ ପରା ଲବଣ୍ୟକୁ ନେଇ 'ରାଜରାଣୀ' ମନ୍ଦିରକୁ ଯାଇଥିଲୁ ?

ପାଠ ॥ ସେଇଠି ଆମ ଦି ଜଣଙ୍କୁ ଏକୁଟିଆ ଦେଖି, ଦଳେ ଟୋକା ଘେରି ଗଲେ, ଟଣା ଓଟରା ଆରମ୍ଭ କରି ଦେଲେ ?

ଲଛ୍ମି ॥ କ୍ୟା ହୁଆ, କୌନ୍ ବେଇଜତି କିୟା, ତୁମ୍ ଲୋଗୋ କୋ ?

ପାଠ ॥ କିଏ କଲା ? ଆମେ କଣ ତାଙ୍କ ନାଁ ଗାଁ ଜାଣିଚୁ । ଜୀବନବିକଳେ ତ ପଳେଇ ଆସିଲୁ ।

ରସିକ ॥ ଅଜିକାଲି ବାହାରେ ଝିଅ ପିଲାଙ୍କୁ ଦେଖିଲେ ଟୋକାଏ କାଢ

ବାକ୍ସରେ ମିଟେଇ ଦେଖିଲ ଭଳି ହୁଉଚନ୍ତି । ଅଭ୍ର କେତେ ସେମିଛ ଏକୁଟିଆ ଯିବନାହିଁ ।

[କେଶରବାଈ ଗଳିର ଆଲୋକିତ ଅଂଶରେ ଜଣେ ସୂର୍ଗୀ ବଦେଶୀ ଯୁବକ ଘର ଖୋଜୁଥିବାର ଦେଖାଯାଏ ।]

ଜେମସ୍ ॥ Gentleman, Is it Kesarbai Lane ?

ପାଠ ॥ (ବାହାରକୁ ଲକ୍ଷ୍ୟ କରି) ଦେଖିଲୁ ଲଲ୍ଲୁ କାହା ପାଟି ଶୁଭୁଚି ।

ଜେମସ୍ ॥ ବିଭିନ୍ନ ଦୋକାନୀ ଏବଂ ଯିବା ଆସିବା କରୁଥିବା ଲୋକଙ୍କୁ ପଗ୍ଗୁରୁ-ଥାଏ ।

ଲଲ୍ଲୁ ॥ ତୋ ଏହୁ ହେଁ, ଓ ଗ୍ରେଜିସ ? (ବାହାରକୁ ଦୌଡ଼ି ଯାଇ ଜେମସ୍‌ର କଲର୍ ଧରି ଟାଣି ଆଣିଲ ।

ଜେମସ୍ ॥ I just want to locate an address. Leave me, Leave me.

ରସିକ ॥ ଆରେ ଲଲ୍ଲୁ, ସେ ସାଇବଟାକୁ ଧରଚୁ କାହିଁକି ? ଅଚହ୍ନା ଲୋକ, ହୁଏତ ବାଟ ଭୁଲି ଯାଇଚନ୍ତି ।

ଲଲ୍ଲୁ ॥ ହାମ, ସାଇବ ନେଇ ମାନତା । ମାରେଙ୍ଗା ସାଲେକୋ ।

(ମାରିବାକୁ ବାହାରିଲ) (ପାଠ ଦଉଡ଼ି ଆସିଲ)

ପାଠ ॥ ଲଲ୍ଲୁ ଗୁଡ଼ୁଦେ ବାବୁଙ୍କୁ । ତାଙ୍କ ପାଇଁ ଆମ ମାନ ମହତ୍ ବଂଚିଛି ଆଜି ।

ଲଲ୍ଲୁ ॥ କ୍ୟା, ସଚ୍‌ବାତ୍ ?

ପାଠ ॥ ଇସେ ଥିଲେ ବୋଲି ତ ସେ ଗୁଣ୍ଡାପାଞ୍ଚଟା ଟୋକା ଆମକୁ ଛାଡ଼ି ପଳେଇଗଲେ ।

ଲଲ୍ଲୁ ॥ ତୋ ସେ ବାତ୍ ? ହାମକୋ ମାଫ୍ କିଜିସେ ସାହାବ ।

ରସିକ ॥ (ପଛରୁ ଆସି ଲଲ୍ଲୁର କଲର ଧରି ଟାଣି ଟାଣି ନେଇଗଲେ) ତୁଟା ଗୋଟାଏ ବେକୁବ୍ । ମାନେ, ମାନେ Ediot. (ଜେମସ୍ ନିକଟକୁ

ଆସି ବଳସ୍ୱରେ) Sorry, Sorry. Many many thanks to you for your help.

James ॥ I understand your language. ଆପଣ ଓଡ଼ିଆରେ କୁହନ୍ତୁ । ମୁଁ ବୁଝିପାରୁଛି ।

ରସିକ ॥ Good --very good, But how ?

James ॥ Last two years ହେଲା । ମୁଁ Language institute ରେ ଓଡ଼ିଆ ଶିଖୁଛି । ବର୍ତ୍ତମାନ ମୁଁ ବହୁପଢ଼ି ପାରୁଛି । କଥା ମଧ୍ୟ ବୁଝି ପାରୁଛି । ଆପଣଙ୍କର ଫକୀରମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧର, ଗୋଦାବରୀଶ, ରାଧାମୋହନ, ସଚ୍ଚିଦାନନ୍ଦ, ମାନସିଂ, ଗୋପୀନାଥ—ଏମାନେ ସମସ୍ତେ ସୁନ୍ଦର ଲେଖିଛନ୍ତି ।

ରସିକ ॥ (ସ୍ତବ୍ଧ ହୋଇ) ଆପଣ ଜଣେ ବିଦେଶୀ ହୋଇ ଏତେ ଓଡ଼ିଆ ଶିଖିଲେଣି ? ମୁଁ ତ ମୋଟେ ପାରୁନି ।

ଜେମସ୍ ॥ Why ? ଆପଣ ମାନେ ତ Englise ପଢ଼ୁଥିଲେ । ସେକ୍‌ସପିୟର, ବାଇରନ, କୀଟସ୍ ନେଇ ଇଣ୍ଡିଆନ ମାନେ ଅନେକ ଗବେଷଣା କରିଛନ୍ତି । Exactly like that.

ରସିକ ॥ ଆପଣଙ୍କ ମୁହଁରୁ ଓଡ଼ିଆ ଶୁଣିବାକୁ ବେଶ୍ ମଜା ଲାଗୁଛି । (ରସିକ ପ୍ରାଣଖୋଲା ହସ ହସିବାକୁ ଲାଗିଲେ)

ଜେମସ୍ ॥ ଖାଲି ଭାଷା ନୁହେଁ । ଆପଣଙ୍କର ଏଇ ଦେଶ "ଓଡ଼ିଶା" ମୁଁ ବୁଲି ଦେଖିଛି । Rich in nature, Rich in architecture, Rich in culture. I mean very intersting.

ରସିକ ॥ (ମୁଗ୍ଧ ହୋଇ) intersting !!!

ଜେମସ ॥ ଆପଙ୍କର କବି ମାନେ ଯେମିତି ସୁନ୍ଦର ଲେଖିଛନ୍ତି, ଆପଣଙ୍କର ଶିଳ୍ପୀମାନେ ମଧ୍ୟ ସେମିତି ଚମତ୍କାର ଆଙ୍କିଛନ୍ତି ।

ରସିକ ॥ ମୋର ମନେ ହେଉଛି ଆପଣ ପୁରୀ, କୋଣାର୍କ, ଭୁବନେଶ୍ୱର ସବୁ ଦେଖି ସାରିଛନ୍ତି ।

ଜେମସ୍ ॥ Yes, not once, I have seen several times. ଆଜି ରାଜରାଣୀ ମନ୍ଦିରରେ ଦେଖିଲି ଆପଣଙ୍କର ଝିଅକୁ ।

—ଶତଗ୍ରନ୍ଥିଶ—

ରସିକ ॥ Bad luck ଦେଖନ୍ତୁ । କେତେ ଗୁଣ୍ଡାଏ Youngman, ମାନେ, ମାନେ Bad man ସେମାନଙ୍କୁ ଏକା ଦେଖି attack କରୁଥିଲେ । ଆପଣ ତାଙ୍କୁ ବଂଚେଇ ଦେଇଛନ୍ତି । ମାନେ Save କରିଛନ୍ତି ।

James ॥ ସେମାନେ ଗୁଣ୍ଡ ଆସିଥିଲେ ଏଇଟା (ଗୋଟିଏ ତାଳପତ୍ର ପୋଥି ଦେଖାଇ) । address ଲେଖା ହେଇଛି । ମୁଁ ତ ଫେରେଇ ଦବାକୁ ଖୋଜି ଖୋଜି ଆସିଛି ।

ରସିକ ॥ (ପୋଥିଟାକୁ ହାତରେ ନେଇ) I see. Thank you, many many thank you.

James ॥ But, what is this ?

ରସିକ ॥ This ? ଏଇଟା ପୋଥି ।

Jamós ॥ POTHI ??? What do you mean ?

ରସିକ ॥ (ବୁଝାଇବାକୁ ଆପ୍ରାଣ ଚେଷ୍ଟା କରି) a great old Script.

James ॥ Great old Script. କେଉଁ ବିଷୟ ନେଇ ଲେଖା ?

ରସିକ ॥ କାମଶାସ୍ତ୍ର ।

James ॥ KAMA SASTRA !!! What is that ?

ରସିକ ॥ Kama means SEX, A great book on Sex.

James ॥ But your doughter took it to temple !!! Why ?

ରସିକ ॥ Templeର ପ୍ରାଚୀନ ମୂର୍ତ୍ତି ସହିତ, ଏହି ପୋଥିକୁ ମିଶାଇ ପଢ଼ିବାକୁ ହୁଏ ।

James ॥ I see, ଏହାକୁ କିଏ ଲେଖିଛନ୍ତି ।

ରସିକ ॥ କାମ ଶାସ୍ତ୍ରର ରଚୟିତା ମୁନି ବାତ୍ସାୟନ ।

James ॥ It's an ancient research work.

ରସିକ ॥ନିଶ୍ଚୟ । ଦିନକର ଲେଖା ନୁହେଁ । ଯୁଗ ଯୁଗ ଅଧ୍ୟୟନ, ଗବେଷଣା, ଅନୁଭୂତି ନେଇ ହେଇଚି ପୃଥିବୀର ପ୍ରାଚୀନତମ କାମ ଶାସ୍ତ୍ରର ଏକ ଗ୍ରନ୍ଥ ।

—ଅପେକ୍ଷା—

James ।। ମୁଁ ଏହା ପଢ଼ିବାକୁ ଚାହେଁ । ଆପଣ ମୋତେ help କରିବେ ?

ରସିକ ।। ମୁଁ ନୁହେଁ । ଲାବଣ୍ୟ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଉପଯୁକ୍ତ ।

James ।। LABANYA, Who is she ? ତାଙ୍କ ସହିତ ମୋର ପରିଚୟ ହୋଇ ନାହିଁ ।

ରସିକ ।। ମୁଁ ପରିଚୟ କରାଇ ଦେବି । ଆଉ ଲାବଣ୍ୟ ଆପଣଙ୍କୁ ଏଇ ପୋଥି ସହିତ ପରିଚିତ କରାଇବ ।

James ।। ଏହା ଓଡ଼ିଆ ଭାଷା ।

ରସିକ ।। ନା, ଏ ଦେଶର ପ୍ରାଚୀନ ଭାଷା ସଂସ୍କୃତ ।

James ।। Sanskrit !!! (ଭକ୍ତିରେ ପୋଥିକୁ ମଥାରେ ଛୁଇଁଲେ) I am fortunate. Thank you very much.

ମଞ୍ଚ ଅନ୍ଧକାର ହେଲା । ପୁଣି ଆଲୋକିତ ହେଲାବେଳକୁ ଦେଖାଗଲା ଜେମସ୍ ଯେଉଁଠି ବସିଥିଲେ, ସେ ଆସନରେ ବସିଛି ସୁନୟନା । ରସିକ ପୂର୍ବପରି ସ୍ୱ ସ୍ଥାନରେ ରହି ତାକୁ ବୁଝାଉଛନ୍ତି ।

ରସିକ ।। ଆଲୋ ଆଉ ଭାବୁଚୁ କଣ ? ଯା'କୁଇ କହନ୍ତି ଭାଗ୍ୟ । ମା' କାଳୀ ତୋର ଆଶା ପୂରଣ କରିଚନ୍ତି । ଟୋକାଟାକୁ ଦେଖିଲେ ତୋର ମନ ଭରି ଉଠିବ । ଲାବଣ୍ୟକୁ ଠିକ୍ ମାନିବ ।

ନୟନା ।। କୋଉ ଦରିଆ ପାରିର ପିଲା । ଜାତି, ଗୋତ୍ର ଜଣାନାହିଁ ।

ରସିକ ।। ବୁଝିଲୁ ନୟନା, ଦିନ ଥିଲା ଯେତେବେଳେ ଏଇ ସାରା ପୃଥିବୀଟା ଗୋଟାଏ ଥିଲା । ତା' ପରେ ବିଭିନ୍ନ ଦେଶ, ଜାତି, ସମାଜରେ ବିଭକ୍ତ ହୋଇ ଯାଇଚି । ମଣିଷ, ମଣିଷଠୁଁ ଅଲଗା ହୋଇ ଯାଇଚି । ପୁଣି ଦିନ ଆସୁଚି ଦେଶ—ଦେଶ, ମଣିଷ ମଣିଷ ମିଶି ଏକ ହେବେ । ତୁ ଦେଖିନୁ ରଥଯାତ୍ରା ବେଳକୁ ପୁରୀରେ ଆମେରିକାର ସାହେବମାନେ ଗେରୁଆ ପିନ୍ଧି ସନ୍ନ୍ୟାସୀ ସାଜି ଖୋଳ-କରତାଳ ନେଇ ନାଚି ନାଚି ରାଧେଶ୍ୟାମ କରୁଚନ୍ତି !

ନୟନା ।। ହଁ ଦେଖିଚି । ହେଲେ କାହିଁକି ଇମିତି କରୁଚନ୍ତି ଯେ ?

ରସିକ ।। ସେତିକି ଟିକେ ଭାବିଲୁ, କାହିଁକି ସେମାନେ ଶହ ଶହ ମାଇଲ ଉଡ଼ି ଏଠିକି ଆସୁଚନ୍ତି । ବୁଝିଲୁ ନୟନା ! ଏଇ ଦେଶ ଭାରତ ଦିନେ ସାରା

—ଅଣଗୃଣ—

ପୃଥିବୀକୁ ଆଲୋକିତ କରିଥିଲା । ଶାସ୍ତ୍ର, ପୁରାଣ, ବିଜ୍ଞାନ, ଦର୍ଶନ ସବୁଥିରେ ଆଗୁଆ ଥିଲା । ଏବେ ସେସବୁ ଆମ ଅପେକ୍ଷା ବିଦେଶୀ-ମାନେ ବେଶୀ ବୁଝିଲେଣି । ସେଇଥିପାଇଁ ତ ସେମାନେ ଏତେ ବାଟରୁ ଛୁଟି ଆସୁଚନ୍ତି ଅସଲ ମୂଳତଥ୍ୟ ସବୁ ପାଇବା ପାଇଁ !

ସୁନୟନା ।। ସତେ ?

ରସିକ ।। ତୁ ଆଉ ମନଉଣା କରନା ସୁନୟନା । ଲାବଣ୍ୟକୁ ପାଠ ପଢ଼େଇବା ପାଇଁ ଅନୁମତି ଦେ । ଦେଖିବୁ ପଢ଼ାଉ ପଢ଼ାଉ ଆପେ ଆପେ ଟୋକାଟା ଜାଲରେ ପଡ଼ିଯିବ । ଯେତେ ହେଲେ ଆଦିରସର ଶାସ୍ତ୍ର ତ

ସୁନୟନା ।। ତମେ ଯଦି ଏତେ ଭାବିଚନ୍ତି ଠିକ୍ କରିଚ ମୁଁ କାହିଁକି ମନା କରିବି ? ଲାବଣ୍ୟ ମୋ ଝିଅ, ସିଏ କଣ ତମର ନିଜର ନୁହେଁ ? ହେଲେ ସିଏ କଣ ବିଦେଶୀ ପିଲାଟାକୁ ଠିକ୍ ବୁଝେଇ ପାରିବ ?

ରସିକ ।। ଆଲୋ ପିଲାଟା ଓଡ଼ିଆ ବୁଝୁଚି । ତା' ମୁହଁରୁ ଓଡ଼ିଆ ଶୁଣିଲେ ତୁ ପରା କାବା ହେଇଯିବୁ ! ସଂସ୍କୃତ ଆଉ ଇଂରାଜୀରେ ଲାବଣ୍ୟ ଆମର କୋଉ କମ୍ ସେ ? କିଛି ନ ହେଲେ ନାଚମୁଦ୍ରାରେ ଅଭିନୟରେ ସବୁ ବୁଝେଇଦେବ ।

ସୁନୟନା ।। ନା, ମୁଁ କଣ କଣ କହୁଥିଲି କି ଲାବଣ୍ୟଟା ଯେତେହେଲେ ପିଲାଟା ନା କଣ ।

ରସିକ ।। ଧେତ୍—ତୋର ସବୁବେଳେ ସେଇକଥା । କହିଲୁ ଲାବଣ୍ୟ ସିନା ସ୍କୁଲ, କଲେଜ ମାଡ଼ିନି । ହେଲେ ଘରେ ମାଷ୍ଟର ରଖି ତୁ ତାକୁ ସିନା ପଢ଼େଇଚୁ—ଢେର । ତା ଛଡ଼ା ଜେମସ୍ ତ ଏଇଠିକି ଆସି ପଢ଼ିବ । ତୋ ଝିଅ ତ ବାହାରକୁ ଯାଉନି । କଣ କହୁ ଏଥର ରାଜି ତ ? ପିଲାଟାକୁ ମୁଁ କବାବ୍ ଦେଇଚି । ଠିକ୍ ଛ'ଟାରେ ଆସିବ ।

(ଏତିକିବେଳେ ବାହାରୁ ଲକ୍ଷ୍ମୁ ଆସିଲା)

ଲକ୍ଷ୍ମୁ ।। ନୟନାବାଈ, ରସିକବାବୁ—ସାହାବ ଆସିଗଲା । ଲେକିନ୍ ଧୋତି, ପଞ୍ଜାବୀ ପିନ୍ଧିଚି—ଦେଖୋ କୈସେ ଶାନ୍‌ଦାର୍ ଦିଖୁଚି ।

ରସିକ ।। ସତେ ? (ଦ୍ୱାର ନିକଟକୁ ଯାଇ ରସିକ ଓ ନୟନା ଦେଖିଲେ କେଶବବାଈ ଗଳାର ଆଲୋକିତ ଅଂଶ ଦେଇ ଆସୁଚି ଜେମସ୍ । ପରିଧାନରେ ଭାରତୀୟ ପୋଷାକ ।

—ପଟକ୍ଷେପ—

ରସିକ ॥ (ସୁନୟନାକୁ) ଦେଖିଲୁ ? (ଜେମସ୍‌କୁ ସ୍ୱାଗତ କରି) Welcome, Welcome, Good Evening···Good Evening.

ଜେମସ୍ ॥ (ଘର ଭିତରକୁ ଅସି) No, not Good Evening. କୁହନ୍ତୁ ସ୍ୱାଗତମ୍ । ମୁଁ ତ ଆପଣଙ୍କ ଶାସ୍ତ୍ର ପଢ଼ିବାକୁ ଆସିଛି ।

ରସିକ ॥ ଶୁଣିଲୁ ସୁନୟନା !

ଜେମସ୍ ॥ (ନୟନାକୁ ଚହ୍ନି ନ ପାରି) Please introduce me.

ରସିକ ॥ She, mother, Labanya's mother.

ଜେମସ୍ ॥ Excuse me. ମୁଁ ଆପଣଙ୍କୁ ପ୍ରଣାମ କରୁଛି ।
(ହାତଯୋଡ଼ି ଭାରତୀୟ ଢଙ୍ଗରେ ପ୍ରଣାମ କଲେ)

ନୟନା ॥ (ଆନନ୍ଦରେ ଅଭିଭୂତ ହୋଇ ଜେମସ୍‌ର ମଥା ଅଉଁସି ଦେଲେ)

ଜେମସ୍ ॥ Did she approve ?

ରସିକ ॥ Yes, She is happy. Very happy.
(ସୁନୟନା ଭିତରକୁ ଗଲା)

ଜେମସ୍ ॥ But she went inside ?

ରସିକ ॥ ଲବଣ୍ୟକୁ ଆଣିବାକୁ ଗଲା ।

ଜେମସ୍ ॥ ଲବଣ୍ୟକୁ ଆଣିବାକୁ ଯାଇଛି । You are fortunate. Very very fortunate.

ନୟନା ଲବଣ୍ୟକୁ ନେଇ ଭିତରୁ ଆସିଛି । ପଛରେ ପାଠ ଗୋଟିଏ ଶଙ୍ଖ ନେଇ ଅସୁଛି । ଲବଣ୍ୟ ଓଡ଼ିଶୀ ନୃତ୍ୟ ପୋଷାକରେ ଅପୂର୍ବ ଦେଖା ଯାଉଛି । ହାତରେ ଧରିଛି ଗୋଟିଏ ଥାଳି, ଯେଉଁଥିରେ ସଜ୍ଜିତ ତାଳପତ୍ର ପୋଥି ସହିତ ଧୂପ, ଦୀପ, ଫୁଲ ରଖାଯାଇଛି ।

ଅପୂର୍ବ ଠାଣିରେ ଆଗେଇ ଆସିଲା ଲବଣ୍ୟ । ପ୍ରଥମେ ଥାଳିଟି ପାଠ ହାତକୁ ଦେଲା । ଜେମସ୍ ଓ ଲବଣ୍ୟ ମୁହାଁମୁହିଁ । ମଝିରେ ପାଠ ଥାଳିଟି ଧରିଲା । ଥାଳିରୁ ରାକ୍ଷୀ ଭଳି ଏକ ସୂତା

ନେଇ ଲଳିତା ଜେମସ୍‌ର ଦକ୍ଷିଣ ହାତରେ ବାନ୍ଧି ଦେଲା । ତା'ପରେ ତା ମଥାରେ ସିନ୍ଦୂର, ଚନ୍ଦନ, କର୍ପୂର ବୋଳି ଦେଲା । ଶେଷରେ ତାଳପତ୍ର ପୋଥିଟି ତା ହାତକୁ ବଢ଼ାଇ ଦେଲା । ଜେମସ୍ ଦୁଇ ହାତରେ ପୋଥିଟି ନେଇ ମଥାରେ ଛୁଇଁଲା । ଲାବଣ୍ୟ ଅରୁଆ ଗୁଡ଼ିଲ ବାନ୍ଧିଦେଲା ଜେମସ୍ ମଥାରେ । ପଛରେ ରତ୍ନା ଶଙ୍ଖ ଫୁଙ୍କିଲା ପାଞ୍ଚ । ହୁଳହୁଳି ଦେଲା ସୁନୟନା । ତା ଆଖିରେ ଲୁହର ବନ୍ୟା । ନେପଥ୍ୟ କାଳୀ ମନ୍ଦିରର ଆଳତି ଧ୍ୱନି ଭାସି ଆସିଲା । ଲାବଣ୍ୟ ପ୍ରଦୀପ ଥିବା ଥାଳିରେ ବନ୍ଦାଇଲା ଜେମସ୍‌କୁ ।

———

# ତୃତୀୟ ଅଙ୍କ

[ ମଞ୍ଚ ଆଲୋକିତ ହେଲା ବେଳକୁ ଦେଖାଗଲା 'ଲାବଣ୍ୟ' ଓଡ଼ିଶୀ ନୃତ୍ୟର ପୋଷାକ ଓ ପୁଷ୍ପ-ସମ୍ଭାରରେ ମଣ୍ଡିତା ହୋଇ ଜେମ୍ସ ଆଗରେ ବସିଛି । ଜେମ୍ସ ପୂର୍ବ ଦୃଶ୍ୟ ପରି ପରିଧାନରେ ପୋଥି ହାତରେ ଧରି ଭାରତୀୟ ବିଦ୍ୟାର୍ଥୀ ମାନଙ୍କ ପରି ତକା ପକାଇ ନିଷ୍ଠାର ସହ ଲାବଣ୍ୟର ବକ୍ତବ୍ୟ ଶୁଣୁଛି । ଲାବଣ୍ୟ ଆବୃତ୍ତି କରୁଛି ଏକ ସଂସ୍କୃତ ଶୃଙ୍ଗାର ଗ୍ରନ୍ଥର ପ୍ରଥମ କେତୋଟି ଶ୍ଳୋକ]

ଲାବଣ୍ୟ ।। (ଲାବଣ୍ୟ ଶ୍ଳୋକ ଆବୃତ୍ତି ପରେ) ଭାରତୀୟ ଦର୍ଶନ ମାନବ ଜୀବନରେ ଚାରିଗୋଟି ମହାନ୍ ଲକ୍ଷ୍ୟର ସୂଚନା ଦେଇଛି । ତାହା ହେଲା ଧର୍ମ, ଅର୍ଥ, କାମ, ମୋକ୍ଷ । ସେଥିମଧ୍ୟରୁ ତୃତୀୟଟି ହେଲା କାମ ଅର୍ଥାତ୍ କାମନା । ମଣିଷ ଜୀବନର ପ୍ରତ୍ୟେକ କାର୍ଯ୍ୟ ଏହି କାମନା ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଏପରିକି ପାଶ୍ଚାତ୍ୟ ଦେଶର ମହାମନିଷୀ ମାନେ ମୁକ୍ତ କଣ୍ଠରେ ମାନବ ଜୀବନରେ 'କାମନା'ର ପ୍ରଭାବ ସ୍ୱୀକାର କରିଛନ୍ତି । ଜନକ ଜନନୀଙ୍କର ପୁତ୍ର କନ୍ୟାଙ୍କ ପ୍ରତି ପ୍ରଗାଢ଼ ବାତ୍ସଲ୍ୟ ମଧ୍ୟ କାମନାର ନିର୍ଦ୍ଦୋଷ ପ୍ରତିଫଳନ ।

James ।। ପ୍ରତିଫଳନ ? You mean Reflection.

ଲାବଣ୍ୟ ।। Yes.

James ।। (ମଥା ହଲାଇଛି ବୁଝିଲା ପରି) Next.

ଆଲୋକ ଲିଭିଯାଇଛି । ଅନ୍ଧକାର ମଧ୍ୟରେ ଲାବଣ୍ୟ ଆଉ ଗୋଟିଏ ପଦ ଶ୍ଳୋକ ଆବୃତ୍ତି କରିବାର ଶୁଣାଯାଏ ।

ଆଲୋକ ଧୀରେ ଧୀରେ ଆସିଲା ବେଲକୁ ଦେଖାଯାଏ, ଲାବଣ୍ୟ ଓ ଜେମସ୍ ମଞ୍ଚରେ ଏକ ଭିନ୍ନ ସ୍ଥାନରେ ବସିଛନ୍ତି । ଏଥର ଜେମସ୍ ନୋଟ୍ ଖାତାଟିଏ ନେଇ ମନୋଯୋଗୀ ଶ୍ରୋତା ପରି କିଛି କିଛି ନୋଟ୍ କରୁଛି ଏବଂ ଏକ ଗ୍ରେଟ କ୍ୟାମେରାରେ ମଝିରେ ମଝିରେ ଲାବଣ୍ୟର ବକ୍ତବ୍ୟ ସହିତ ଫଟୋ ଉଠାଇ ନେଉଛି ।

ଲାବଣ୍ୟ ॥ (ଶ୍ଳୋକ ପରେ) ମଣିଷ ମନର ଛବୋଟି ପାହାଚ । ଚେତନ, ଅବଚେତନ ଓ ଅଚେତନ । ସେଇ ଛବୋଟି ପାହାଚ ଉପରେ କେତେ ଇନ୍ଦ୍ରଧନୁର ବର୍ଣ୍ଣ-ବିଚ୍ଛା । କେତେ ରଙ୍ଗର ହୋରି ଖେଳ ! ସେଉଁ ରଙ୍ଗ ମନରେ ସୃଷ୍ଟିକରେ ସ୍ଥାୟୀଭାବ ।

James ॥ ସ୍ଥାୟୀଭାବ ?

ଲାବଣ୍ୟ ॥ ହଁ ସେଇ ସ୍ଥାୟୀଭାବର ପ୍ରତିରୂପ ନଅଟି ।

James ॥ Please explain those nine Bhabas.
[Demonstration ଦେଲା ଲାବଣ୍ୟ ବର୍ଣ୍ଣନା ସହିତ]

ଲାବଣ୍ୟ ॥ ପ୍ରଥମ ହେଉଛି 'ରତି' ଯାହାର ରସ ହେଲା ଶୃଙ୍ଗାର ।
ଦ୍ୱିତୀୟ ହେଉଛି 'ହାସ' ଯାହାର ରସ ହେଲା ହାସ୍ୟ ।
ତୃତୀୟ ହେଉଛି 'ଶୋକ' ଯାହାର ରସ ହେଲା କରୁଣ ।
ଚତୁର୍ଥ ହେଉଛି 'କ୍ରୋଧ' ଯାହାର ରସ ହେଲା ରୌଦ୍ର ।
ପଞ୍ଚମ ହେଉଛି 'ଉତ୍ସାହ' ଯାହାର ରସ ହେଉଛି ବୀର ।
ଷଷ୍ଠ ହେଉଛି ଭୟ, ଯାହାର ରସ ହେଉଛି ଭୟାନକ ।
ସପ୍ତମ ହେଉଛି ଯୁଗୁପ୍ସା, ଯାହାର ରସ ହେଲା ବିଭତ୍ସ ।
ଅଷ୍ଟମ ହେଉଛି ବିସ୍ମୟ, ଯାହାର ରସ ହେଲା ଅଦ୍ଭୁତ ।
ନବମଟି ହେଉଛି ଶାନ୍ତ, ଯାହାର ରସ ମଧ୍ୟ ଶାନ୍ତ ।

[ଉପରୋକ୍ତ ପ୍ରତ୍ୟେକ ସ୍ଥାୟୀଭାବର Demonstration ଦେଇ ଦେଇ ଲାବଣ୍ୟର ଲଲାଟରେ କ୍ଳାନ୍ତିର ସ୍ୱେଦବିନ୍ଦୁ ଦେଖା ଦେଲା । ଜେମସ୍ ନମ୍ର ଭାବରେ ନିଜର ରୁମାଲ୍‌ଟି କାଢ଼ି ଲାବଣ୍ୟର ଲଲାଟରୁ ସ୍ୱେଦବିନ୍ଦୁ ପୋଛିବାକୁ

ଆଉଥିଲା । ଲାବଣ୍ୟ ଜେମସ୍ ହାତରୁ ରୁମାଲଟି ନେଇଗଲା, ଝଟକେ ଝାଳ ପୋଛିଲା ଏବଂ ଜେମ୍ସକୁ ବସିବାକୁ ଇଙ୍ଗିତ କରି ପୁଣି Demonstration ସହିତ କହି ଚାଲିଲା]

ଲାବଣ୍ୟ ।। ଏଇ ସବୁ ଭାବର ସୃଷ୍ଟି ପାଇଁ ଦରକାର ଦୁଇଟି ପଦାର୍ଥ । ପ୍ରଥମ ହେଉଛି ଉଦ୍ଦୀପକ—ଯାହାକୁ Englishରେ କହନ୍ତି Provocating Factor. ଏବଂ ଦ୍ୱିତୀୟଟି ହେଲା ଅବଲମ୍ବନ ବା Exciting Factor. I hope you follow me ?

ଜେମସ୍ ।। Yes, But···

ଲାବଣ୍ୟ ।। ବୁଝିପାରୁଛ, ଏ ସବୁ ଜଟିଳ ମନେ ହେଉଥିବ । Because this is a theory part. ଏଥର ମୁଁ ଶୃଙ୍ଗାର ରସ ନେଇ details କହୁଛି ।

James ।। Yes, Please carry on.

ଲାବଣ୍ୟ ।। (Demonstration ସହିତ) ଶୃଙ୍ଗାର ରସକୁ ଆଦ୍ୟ ରସ କୁହାଯାଏ । ଅନ୍ୟ ଅଠରଟି ରସ ଏହି ଆଦ୍ୟରସର ଚାରିପଟେ ଘୂରି ବୁଲୁଛନ୍ତି । ଠିକ୍ ଯେମିତି Atomic theory ଅନୁଯାୟୀ Electron ଗୁଡ଼ିକ ପ୍ରୋଟନ ଚାରିପଟେ ଘୂରିବୁଲେ ।

(ଏକ ସଂସ୍କୃତ ଶ୍ଳୋକ ଆବୃତ୍ତି କଲେ ଶୃଙ୍ଗାର ରସ ଉପରେ ଏବଂ ଲାବଣ୍ୟ ଶୃଙ୍ଗାର ମୁଦ୍ରାରେ ଛିଡ଼ା ହୋଇ କହିଲେ)

ଲାବଣ୍ୟ ।। ଏଇ ହେଲା ଶୃଙ୍ଗାର ରସର ମୁଦ୍ରା । This is called ଆଦ୍ୟରସ ।

James ।। ଏହାର ସ୍ରଷ୍ଟା କିଏ ?

ଲାବଣ୍ୟ ।। ଏହି ରସର ସ୍ରଷ୍ଟା ଶିବ ଓ ପାର୍ବତୀ । ଶାସ୍ତ୍ର ହିସାବରେ ଏହାକୁ ପ୍ରଥମ ଲିପିବଦ୍ଧ କଲେ ଋଷି ବାତ୍ସାୟନ । ତାଙ୍କ ପରେ ଅନ୍ୟାନ୍ୟ ଅନେକ ଭାରତୀୟ ଓ ପାଶ୍ଚାତ୍ୟ ମନୀଷୀମାନେ ଏହି ବିଜ୍ଞାନର ଗବେଷଣା କରି ଏହାକୁ ସମୃଦ୍ଧ କରିଛନ୍ତି ।

James ॥ Really.

(ପୁଣି Demonstration ସହିତ କହି ଗୃଲିଲ୍ ଲବଣ୍ୟ)

ଲବଣ୍ୟ ॥ Yes, ଋତୁ ମାନଙ୍କ ମଧ୍ୟରେ ଯେମିତି ଶ୍ରେଷ୍ଠ 'ବସନ୍ତ'; ମଣିଷ ଜୀବନରେ ସେମିତି ଶ୍ରେଷ୍ଠ ଦିନ ଗୁଡ଼ିକ ହେଲା ଯୌବନ । ଯୌବନ ଆସିଲେ ମଣିଷର ଦେହ ପୁଷ୍ପିତ, ପଲ୍ଲବିତ ହୁଏ ।

(ନେପଥ୍ୟେ ଯୌବନ ଆଗମନୀ ସଂଗୀତର ଆବେଗ । ତା' ସହିତ ପାଦ ମିଳାଇ ଲବଣ୍ୟର ନାଚ । ନାଚ ଶେଷରେ ଲବଣ୍ୟ ପୁଣି କହିଗୃଲେ)

ଲବଣ୍ୟ ॥ ଯୌବନ ଆସିଲେ ମଣିଷର ଦେହ ମନ ହୁଏ ପୁଲକିତ । ଆସେ ନୂଆ ଅନୁଭୂତିର ରୋମାଞ୍ଚ । ମାଟି ଗୋଡ଼ିର ଏଇ ଧରା ହୋଇ ଉଠେ ସବୁଜ, ସୁନ୍ଦର, ସରସ । ନାୟକ ନାୟିକାର ଦେଖା ସାକ୍ଷାତରେ ସୃଷ୍ଟି ହୁଏ "ପୂର୍ବରାଗ" । ଆଉ ତାହା ପ୍ରତିଫଳିତ ହୁଏ ଆଖିର ଚୃହାଣିରେ, ମୃଦୁ ହାସରେ, ମୁଖର ରକ୍ତିମାରେ, ଦେହର ଆଳସ୍ୟରେ । ମନରେ ସୃଷ୍ଟି ହୁଏ କାମନାର ତରଙ୍ଗ । ସେଇ ତରଙ୍ଗର ଆଘାତରେ ଆସେ ଅଭିଳାଷ । ଅଭିଳାଷରୁ ସ୍ମୃତି, ଉଦ୍‌ବେଗ, ପ୍ରଳାପ ଜଡ଼ତା, ଓ ଗୁଣକୀର୍ତ୍ତନ । ନାୟକ ନାୟିକା ଉଭୟଙ୍କ ମଧ୍ୟରେ ଆସେ ଗଭୀର ଅନୁରାଗର ଆସକ୍ତି । ମନ ଚୃହେଁ ପାଇବାକୁ, ଦେହ ଚୃହେଁ ମିଶିବାକୁ । ନାୟକ ନାୟିକା ପରସ୍ପରକୁ ପ୍ରତୀକ୍ଷା କରନ୍ତି ।

( ନୂପୁର ଛନ୍ଦରେ ଲବଣ୍ୟ ଉପରୋକ୍ତ ବକ୍ତବ୍ୟ ରୂପାୟିତ କରେ । ତନ୍ମୟ ହୋଇ ଚୃହିଁ ରହେ ଜେମସ୍ ତାର ଭାବ ଭଙ୍ଗୀ ଓ ନୃତ୍ୟକୁ )

ଲବଣ୍ୟ ॥ ଏଇ ପ୍ରତୀକ୍ଷାକୁ ମଧୁମୟ କରେ ଶଶୀ, ଜୋତ୍ସ୍ନା, ଫଗୁଣ, ମଳୟ, କୋକିଳ । କାମନାର ବହ୍ନିଶିଖା ଜଳି ଉଠେ । ଦେହ, ମନ, ଆତ୍ମା ସବୁଠୁଁ ଖାଲି ଦହନ, ଜ୍ୱଳନ ।

( ଲବଣ୍ୟ ଦେହର ଜ୍ୱଳନ ଫୁଟାଏ ଅପରୂପ ଲାସ୍ୟ ଭଙ୍ଗୀରେ । ବିଚଳିତ ହୁଏ ଜେମସ୍)

—ଛପନ—

ଲବଣ୍ୟ ।। ଆଉ ସେଇ ଜ୍ୱଳନକୁ ଦ୍ୱିଗୁଣିତ କରି ଆସେ ବିରହ ଜ୍ୱାଳା ।
(ବିରହିଣୀର ଭାବ ପ୍ରକଟିତ ହୁଏ ଲବଣ୍ୟର ଲାସ୍ୟରେ)

ଲବଣ୍ୟ ।। ପ୍ରିୟସଖୀ ଆସି ସମ୍ବାଦ ଦିଏ ନାୟକ ଅନୁତପ୍ତ । ତା'ର ପରିଲକ୍ଷଣରୁ ବୁଝିହୁଏ ସତରେ ସେ ଖାଲି ଅନୁତପ୍ତ ନୁହେଁ ମର୍ମାହତ । ମଧୁର ମିଷ୍ଟବାଣୀରେ ସେ ମାଗିଛି କ୍ଷମା । ନାୟିକା ମନର କ୍ରୋଧ ପୋଛି ହୋଇଯାଏ । ପୋଛି ହୋଇଯାଏ ହୃଦୟର ସମସ୍ତ ଗ୍ଲାନି । ପୁଣି ଥରେ ସେ ନିଜକୁ ସାଜି ନିଏ ଅଭିସାରିକା ବେଶରେ ।

(ଉପରୋକ୍ତ ସଂଲାପଟି କହିବା ବେଳେ ଅଭିନୟ ଭଙ୍ଗୀରେ ତାହା ଫୁଟାଏ ।)

ଲବଣ୍ୟ ।। ଦେହରେ ନାଲି ଶାଢ଼ୀ ଆଉ ସବୁଜ ଉତ୍ତରୀୟ । କେଶରେ କିଆ କେତକୀର ଶୋଭା । ମଥାରେ ମଥାମଣି । କାନରେ କୁଣ୍ଡଳ, କଣ୍ଠରେ ରତ୍ନହାର । କଟିରେ ମେଖଳା, ପାଦରେ ଅଳତା ନୂପୁର । ଆଖିରେ କଳା କଜ୍ଜଳ । କିନ୍ତୁ ଏ କଣ ? ଆକାଶରେ ମେଘ । ବଜ୍ର, ବିଦ୍ୟୁତ୍ ମହ୍ଲାର ରାଗରେ ଓହ୍ଲେଇ ଆସିଚି ଶେଷ ଶ୍ରାବଣର ବର୍ଷା । ଝଡ଼ ତୋଫାନ୍ ...

କିନ୍ତୁ ଅଭିସାରିକାର ପଥରୋଧ କରିବ କିଏ ? ଯେମିତି ହେଉ ସେ ନାୟକକୁ ଭେଟିବ । ମିଳନର ସେଇ ଆଶ୍ଳେଷ, ଆଲିଙ୍ଗନ ଭିତରେ ସବୁ ଭୁଲିଯିବ ।

(ଉପରୋକ୍ତ ସମସ୍ତ କିଛି କହୁଁ କହୁଁ ଲବଣ୍ୟ ନୃତ୍ୟରେ ରୂପାୟିତ କରେ । ଜେମସ୍ ଦେଖୁ ଦେଖୁ ମୁହଁକୁ ବାରମ୍ବାର ଝାଳପୋଛେ ।)

ଲବଣ୍ୟ ।। ଶେଷରେ ଶୃଙ୍ଗାରର ବିଭିନ୍ନ ଅବସ୍ଥା...କହୁଚି । ନାୟକ ନାୟିକାର ପରସ୍ପର ନିରୀକ୍ଷଣ, ଆଘ୍ରାଣ,ଆଲିଙ୍ଗନ, ପ୍ରେମାଳାପ, ରୋମାଞ୍ଚ, କଂଟାଙ୍କ, କମ୍ପନ, ସ୍ୱେଦ, ଚୁମ୍ବନ......

(ଲବଣ୍ୟ ଉପରୋକ୍ତ ବର୍ଣ୍ଣନା ଓ ଭଙ୍ଗୀଗୁଡ଼ିକ ଦେଖାଇଲା ବେଳେ ନିଜେ ସମ୍ପୂର୍ଣ୍ଣ ଅଭିଭୂତା ହୋଇଯାଏ ଏବଂ ତାର ଅଭିନୟରେ ବିମୁଗ୍ଧ ଜେମସ୍ ମଧ୍ୟ ନିଜକୁ

ହସ୍ରଇ ବସେ । ଜେମସ୍ ତାଙ୍କୁ ଧରିନିଏ । ଗଭୀର
ଆବେଗରେ କହେ I love you, I love you,
I can't live without you.

ଲାବଣ୍ୟ ।। ଜେମସ୍‌ର ବାହୁ ବନ୍ଧନରେ ନିରୂପାୟ ଅବସ୍ଥାରେ ଜେମସ୍‌କୁ ଚୁମ୍ବି
ଖାଉଥିଲା ବେଳେ ମଞ୍ଚ ଅନ୍ଧକାର ହୁଏ ।

[ ମଞ୍ଚ ଅନ୍ଧକାର ହେବା ଭିତରେ ନେପଥ୍ୟ ଶୁଭିଚ
ସାହ୍ନାଇ ଓ ଯୋଡ଼ିନାଗରାର ଧ୍ୱନି । ଆଉ ତା ମଝିରେ
ଟିଙ୍କ-ହୁଳହୁଳି । କିଛିକ୍ଷଣ ପରେ ମଞ୍ଚ ଆଲୋକିତ ହୁଏ ।
କଲ୍ପନାର ଘରେ ସଦ୍ୟ ବିବାହର ସମସ୍ତ ଆୟୋଜନ
ସମ୍ପୂର୍ଣ୍ଣ ହୋଇଲା ଭଳି ମନେହୁଏ । ବୈଠକଖାନା ସଂଲଗ୍ନ
ଦୃଶ୍ୟାଞ୍ଚଳରେ ଥିବା ପଲଙ୍କଟି ଫୁଲରେ ସଜା ହୋଇଥାଏ ।
ବୈଠକଖାନାରେ ଅତିଥିମାନେ ଦେଇ ଯାଇଥିବା ଉପହାର
ବାକ୍ସ ସବୁ ଗୋଟିଏ ଜାଗାରେ ଠୁଳ ହୋଇଥାଏ । ସମସ୍ତ
ରାତି ଦଶଟା । ନିମନ୍ତ୍ରିତ ଅତିଥିମାନେ ବିଦାୟ ନେଲେଣି ।
ଲକ୍ଷ୍ମୀ ସାରାଦିନ କାମକରି ଥକ୍‌କା ହୋଇ ବୈଠକଖାନା
ଘର ଚଟାଣରେ ଗଡ଼ିଥିବାର ଦେଖାଯାଏ । ନେପଥ୍ୟ
ଶାହ୍ନାନାଇର ଶବ୍ଦ ଦୂରରେ ଶୁଣାଯାଉଥାଏ । ଏତିକି-
ବେଳେ ରସିକ ଆସିଲେ ବାହାରୁ ]

ରସିକ ।। ଆରେ କୁଆଡ଼େ ଗଲ ସବୁ । ପାନଖଣ୍ଡେ ମିଳିବ ନା ନାହିଁ । ଏତେ
ବଡ଼ ଆୟୋଜନ, କାହିଁରେ କଣ କୁଣିଆ ଚର୍ଚ୍ଚା ହେଲେ । ମତେ
ଖଣ୍ଡେ ପାନ ମିଳିଲା ନାହିଁ ? ଆଲୋ ପାଟ ଶୁଭୁଚ । ଓହୋ, ଡାକି
ଡାକି ଗଳା ଫାଟି ଗଲେ ବି କେହି ଶୁଣିବାକୁ ନାହିଁ । ଗୁଡ଼ ମାଛିଙ୍କ
ସବୁଦିନେ ଏଇଆ । କାମ ଥିଲାଯାଏଁ ସମସ୍ତେ ଗୋଡ଼ ଧରିବେ ।
ଆଉ କାମ ସରିଗଲେ କେହି ପଚାରିବେ ନାହିଁ । ଓଲଟି ଯାହା
କୋଉଠି କ'ଣ ବିଗିଡ଼ି ଗଲା ମାଛି ବେକରେ ଗାମୁଛା ପକାଅ ।

(ରସିକ କଥା କହୁ କହୁ ତଳେ ଶୋଇଥିବା ଲକ୍ଷ୍ମୀକୁ
ହାବୁଡ଼ି ପଡ଼ିଲେ)

ରସିକ ।। ଦେଖ, ଏଇଟା ଏଇଠି ମାଲ୍‌ଟିଇ ପଡ଼ୁଚି । (ଲକ୍ଷ୍ମୁର ମୁହଁକୁ ଗୁଣ୍ଡି)
ଅରେ ବଞ୍ଚିଚି ନା ମଲଣି ? (ତଳେ ବସିପଡ଼ି ଲକ୍ଷ୍ମ ର ହାତଟା ନେଇ ନାଡ଼ୀ ଦେଖିଲେ)

ରସିକ ।। ନା, ନାଡ଼ିଟାତ ଚାଲୁଚି । ଯା' ହଉ ମାଗଣାରେ ପେଟେ ପିଇଦେଇ ଇଏ ବ ଗୋଟେ ରକମ୍ ଆରାମ । ହେଲେ ମତେ କଣ ମିଳିଲା ? ଆଜି ଭଲ ଦିନରେ କେଉଁ ହେଲେ ପଦେ ପଚାରିଲେ ? ନାଃ ଚାଲିଯିବ । ଆଉ ଏ ଘର ମାଡ଼ିବ ନାହିଁ......

( ଏତିକି ବେଳେ ପାଟ ଆସି ପଛରୁ ଡାକିଲା )

ପାଟ ।। ବନ୍ଦି ସାଆନ୍ତେ !
ରସିକ ।। ( ପଛକୁ ନ ଅନାଇଁ ) କିଏ ?
ପାଟ ।। ଟିକିଏ ରୁହ ।
ରସିକ ।। ( ରାଗରେ ) କାହିଁକି ?
ପାଟ ।। ମୁଁ ଟିକିଏ ମୁଣ୍ଡିଆ ମାରିବି ।
ରସିକ ।। କାଲି କାହିଁକି ?
ପାଟ ।। ମଲା, ନୂଆଲୁଗା ପିନ୍ଧିଚି ପରା । ଦେଖୁନ କେମିତି ହେଇଚି ।
ରସିକ ।। ( ଥରେ ଗୁଣ୍ଡିଦେଇ, ରାଗରେ ) ହୁଁ ବଢ଼ିଆ ।
ପାଟ ।। ଏଁ ତମେ ରାଗିଚ ନା କଣ ? ଇମିତି କଣ ଅଜା ଟାଇଁ ଟାଇଁ କଥା—
ରସିକ ।। ହଁ ରାଗିଚି । ହେଲେ ରାଗିଲେ ବ ପଚାରୁଚି କିଏ ?
ପାଟ ।। କାହା ଉପରେ ରାଗିଚ ମ ?
ରସିକ ।। ତତେ କହି ଲାଭ କଣ ?
ପାଟ ।। ( ଅଳିକରି ) କହୁନ, କୁହନ, ମୋ ରାଣ—
ରସିକ ।। ରାଗିଚି ତମ ସମସ୍ତଙ୍କ ଉପରେ ।
ପାଟ ।। ମୋ ଉପରେ ରାଗିବ ତ ରାଗ, ହେଲେ ମୋ ମାଲିକାଣୀଙ୍କ ଉପରେ ରାଗନାହିଁ ।
ରସିକ ।। ତୁ କଣ ମାଲିକାଣୀ ପଟ ହେଇ, ମୋ ସାଙ୍ଗରେ କଳି କରିବାକୁ ଆସିଚୁ ?

ପାଟ ॥ ମଲ୍ କରିବନ ? ମୋ ମାଲିକାଣି ପରି କିଏ ହବ ? ଦେଖୁଚ, ଦେଖ, ମୋତେ କମିତ ପାଟ ଲୁଗା ଗହଣା ପିନ୍ଧେଇଚନ୍ତି…

(ପାଟ ନଜେ ବୁଲି ବୁଲି ତା ପୋଷାକ ଦେଖାଇଲା) ଅଉ ପାନଖିଆ ବି ଦେଇଚନ୍ତି ।

ରସିକ ॥ ହେଲେ ମତେ ଏ ଘରେ ଆଜି ପୂର୍ବ ଦିନରେ ପାନ ଦି ଖଣ୍ଡ ମିଳିଲା ନାହିଁ……

ପାଟ ॥ ଏଁ ତମକୁ ପାନଖଣ୍ଡେ କେହି ଦେଲେନ ? ନଉନ, ହେଇଟି ମୁଁ କାନରେ ବାନ୍ଧକରି ରଖିଚି । ନଅ ।

ରସିକ ॥ ତୋ ହାତରୁ ମୁଁ ପାନ ଖାଇବ ? ଯାଃ ବାହାର ଏଠୁ !

( ନଜେ ରସିକ ରାଗିକରି ଚାଲିଯାଉ ଥିଲେ )

ପାଟ ॥ ଏ, ମା, ଆସ ଝିଅଟ ଆସ । ବଡ଼ ସାଆନ୍ତେ ଚାଲି ଯାଉଚନ୍ତି ।

(ନୟନା ପରମ ଆନନ୍ଦରେ ପାନଖଣ୍ଡେ ଚୋବାଇ ଚୋବାଇ ଆସିଚି । ରସିକଙ୍କୁ ଦେଖି ସବୁ ବୁଝିପାରି )

ନୟନା ॥ ଯାଆନ୍ତୁ । ତୁ ତାଙ୍କୁ ଅଟକେଇଚୁ କାହିଁକି । ଛାଡ଼ିଦେ । (ରସିକଙ୍କ ପାଖକୁ ଆସି ତାଙ୍କ ମୁହଁକୁ ଚାହିଁ) ସତ କହିଲ, ତମେ ରାଗିଚ ? ମୋ ଉପରେ ରାଗିଚ ।

ରସିକ ॥ (ଅଉ ସମ୍ଭାଳି ନ ପାରି ହସି ପକେଇ) ଆଲୋ ତୋ ଉପରେ ଫେର୍ ମୁଁ ରାଗିବ ?

ପାଟ ॥ (ମୁହଁରେ ହାତ ଦେଇ ହସି ଉଠିଲା)

ରସିକ ॥ ଏଁ ଦାନ୍ତ ଦେଖଉଚ । ଯା, ତୁ ଭିତରକୁ ଯା—ଏଠି ଠିଆ ହେଇ କଅଣ ଦେଖୁଚୁ ?

(ପାଟ ଲାଜରେ ପଳାଇଲା)

ନୟନା ॥ ଆସ ମ, ଭିତରକୁ ଆସ । ଆସ ଦେଖିବ, ବରକନିଆଁ ଦେଖିବାକୁ କି ଭିଡ଼ ହେଇଚି ଦେଖିବ ଆସ । ମୁଁ ଯେତେ କହିଲି ରାତି ଏତେ ହେଲାଣି ତମେ ସବୁ ଯାଅ, ଶୁଣୁଚି କିଏ ? ତମେ କହିଲେ ହେଲେ ଶୁଣିବେ ।

ରସିକ ।। ମୁଁ କହିଲେ ଲୋକେ କଣ ଭାବିବେ । ମୁଁ କଣ ଘର ଲୋକ ।

ନୟନା ।। ହଁ, ଘର ଲୋକଙ୍କଠାରୁ ବଳି । ଆସ !

(ନୟନା ଜୋର୍ କରି ରସିକଙ୍କୁ ଟାଣି ଟାଣି ନେଇଗଲା । ମଞ୍ଚ ଅନ୍ଧାର ହେଲା । ଅନ୍ଧାର ଭିତରେ ଲକ୍ଷ୍ମୀ ଉଠି ଚାଲିଗଲା)

ନୟନା ।। (ଭିତରୁ) ଆଲୋ ପାଟ, ବାଜାବାଲଙ୍କୁ ଖାଇବାକୁ ଦେଇଚୁ ?

ପାଟ ।। (ଭିନ୍ନ ଦିଗରୁ ମଞ୍ଚ ଉପରକୁ ଆସି) ମଲା, କେତେବେଳୁ ନା—ସମସ୍ତେ ଖାଇ ଉଠିଗଲେଣି ।

ନୟନା ।। ଆଉ ଦାଣ୍ଡରେ ଘାଟ ଭିକାରୀ କିଏ ଅଛି ଦେଖ୍ । କାହାର କଣ ଦରକାର ବୁଝ ।

ପାଟ ।। ଆଉ କିଏ ଅଛି କୋଉଠି (ବୈଠକ ଖାନାର ବାହାରକୁ ଥିବା ଦୁଆର ଖୋଲି ଦେଖିଲା । ଅନ୍ଧାରରେ ଜଣେ କେହି ଛିଡ଼ା ହୋଇଥିବାର ଦେଖି) କିଏ ଜଣେ ଠିଆ ହେଇଚି ମା—

ନୟନା ।। ମୁଁ ପରା କହୁଚି । ଘାଟ ଭିକାରୀ କିଏ ପାଇ ନଥିବ ।

(ନୟନା ମଞ୍ଚ ଉପରକୁ ଆସି ନିଜେ ବାହାରକୁ ଚାହିଁଲା । ବାହାରେ ଛିଡ଼ା ହୋଇଥିବା ସୂର୍ଯ୍ୟମଣି ନୟନାକୁ ଦେଖି ଚହ୍ନି ପାରିଲେ)

ସୂର୍ଯ୍ୟମଣି ।। ସୁନୟନା ।

ନୟନା ।। (ଚହ୍ନି ନ ପାରି) କିଏ ? (ନିରିକ୍ଷଣ କରି) ତୁମେ ଆପଣ ? ମୋର କି ଭାଗ୍ୟ !!! ଆଲୋ ପାଟ ଅନେଇଚୁ କଣ ? ଯା—(ପାଟ କାନରେ ଚୁପ୍ ଚୁପ୍ କରି କହିଲା) ମୋ ଦୋଷ କ୍ଷମା କରନ୍ତୁ ମଣିମା, ଦାସୀ ଆପଣଙ୍କୁ ଚହ୍ନି ପାରିଲା ନାହିଁ । ମୁଁ କମିତି ଭାବିବି ଆପଣ ଦୁଆରେ ପାଦ ଦେବେ ?

ସୂର୍ଯ୍ୟମଣି ।। ତୁ ଯେତେବେଳେ ନିମନ୍ତ୍ରଣ କରିଚୁ, ନ ଆସି ରହି ପାରନ୍ତି କେମିତି ? ତା' ଛଡ଼ା ମୋର ଯେ ଅନେକ ସ୍ମୃତି ଏଇଠି ରହିଚି । ସତରେ ନୟନା ଆଉ ଥରେ ମୁଁ ଫେରି ଆସିଚି ଆଜି ମୋର ସେଇ ଯୌବନର ସ୍ମୃତି ତୀର୍ଥକୁ ।

—ଏକୋଷଠି—

ନୟନା ॥ ସେ'ମୋର ସୁକୃତ । ଆସନ ଗ୍ରହଣ କରନ୍ତୁ ମହିମା ।

ସୂର୍ଯ୍ୟଭାନୁ ॥ (ଆସନ ଗ୍ରହଣ କରିବା ପୂର୍ବରୁ ଅତୀତର ସ୍ମୃତି ବିଜଡ଼ିତ ଘରଟିକୁ ବୁଲି ବୁଲି ଦେଖିଲେ । ତା'ପରେ ଟୋକିଏ ଦୂରରେ ଏକ ଆସନରେ ବସି ପଡ଼ିଲେ । ପାଣି ଆଣିଥିବା ଥାଳି ଓ କମଣ୍ଡଳୁ ନେଇ ନୟନା ସୂର୍ଯ୍ୟଭାନୁଙ୍କ ପାଦ ତଳେ ବସି ତାଙ୍କର ପାଦ ଧୋଇଦେଲା)

ସୂର୍ଯ୍ୟଭାନୁ ॥ ଏସବୁ ରାଜକୀୟ ଚର୍ଚ୍ଚା ଆଉ କାହିଁକି ସୁନୟନା !!! ରାଜ୍ୟ ଯାଇଛି ସବୁ ଯାଇଛି । ଆଜି ମୁଁ ଭିକାରୀ । ଏସବୁ କଣ ହେବ ?

ନୟନା ॥ ଦୁନିଆଁ ଆଖିରେ ଆପଣ ଯାହା ହୁଅନ୍ତୁ । ମୋ ଆଖିରେ ଆପଣ 'ରାଜା' ମୋ ହୃଦୟର ରାଜା । ମୁଁ ତ କେବେ ଆପଣଙ୍କୁ ଅସମ୍ମାନ କରି ପାରେନା ।

ସୂର୍ଯ୍ୟଭାନୁ ॥ କିନ୍ତୁ ଏସବୁ ଚର୍ଚ୍ଚା ପାଇଁ ମୁଁ ଆସିନି ସୁନୟନା, ଆସିଚି ତୋ ଝିଅ, ଜୋଇଁଙ୍କୁ ଦେଖିଯିବି । ଆଉ ଆଶୀର୍ବାଦ କରିଯିବି । ଏମିତି ସୁଯୋଗ ମୋ ପାଇଁ ଆଉ ଆସିବ ନାହିଁ ।

ନୟନା ॥ ପ୍ରଭୁ !!!

ସୂର୍ଯ୍ୟଭାନୁ ॥ ହଁ ସୁନୟନା—ମନେ ପଡ଼ୁଚି ଏମିତି ଏକ ରାତିରେ, ଦୀର୍ଘ କୋଡ଼ିଏ ବର୍ଷ ତଳେ ତୋ ସାଥିରେ ମୋର ବିବାହ ହୋଇଥିଲା । ଠିକ୍ ଏମିତି ଝଲମଲ ଆଲୁଅର ରୋଷଣୀ, ଇମିତି ଶାହାନାଇର ଆଳାପ, ଯୋଡ଼ି ନ ଗରାର ତରଙ୍ଗ, ଆଉ ତା'ରି ଭିତରେ ମୁଁ ବର ସାଜି ତୋ ହାତ ଧରିଥିଲି । କି ଉତ୍ସାହ, କି ଉତ୍ତେଜନା, କି ଉନ୍ମାଦନା, କି ରୋମାଞ୍ଚ !!! ପାରିବୁ ସୁନୟନା ଆଉ ଥରେ ସେଇ ରୋମାଞ୍ଚ ମତେ ଦେଇ ?

ନୟନା ॥ ମନରେ ଆବେଗ ମୋର ଅଛି । ହେଲେ ଦେହରେ ଆଉ ସେଇ ଉଚ୍ଛଳା ଜୁଆର ନାହିଁ ପ୍ରଭୁ । ମୁଁ ଶୂନ୍ୟ ହୋଇ ଯାଇଚି ।

ସୂର୍ଯ୍ୟଭାନୁ ॥ ନା, ସବୁ ଶୂନ୍ୟତା ମୁଁ ଆଜି ହରେଇ ଦବାକୁ ଚାହେଁ ଅତୀତ ସ୍ମୃତିର ରୋମନ୍ଥନ ଭିତରେ ।

ନୟନା ॥ କୁହନ୍ତୁ ପ୍ରଭୁ କଣ ଦେଇ ଦାସୀ ଆଜି—ଅଧୀନା ଆପଣଙ୍କ ସେବା କରିବ ?

ସୂର୍ଯ୍ୟଶ୍ୱଜ୍ଞ ।। ( ପଦଗ୍ଚରଣ କରି ଅନ୍ତରରେ ଦେଖିଥିବା ଉଦ୍ୟାନ ଆଡ଼କୁ ଗଲେ ) ଦୀର୍ଘ କୋଡ଼ିଏ ବର୍ଷ ପରେ ଆଜ ଏଇ ଘରେ ପୁଣି ସେମିତି ଗୋଟିଏ ରାତି । ସୁନୟନା...ମନ କହୁଛି ତୋ ହାତରୁ କିଛି ପାନୀୟ— I mean Drinks ଯଦି ଥାଏ ।

ନୟନା ।। ଦଇତ ସ୍ୱାମୀ ( ପାଠକୁ ତାକ ଇଙ୍ଗିତ କଲ୍ । ପାଠ ଏକ ଥାଳିରେ ପାନୀୟ ନିକଟରେ ରଖିଲ ) ( ଏତିକବେଳେ ସୂର୍ଯ୍ୟଶ୍ୱଜ୍ଞ ନିଜ ହାତରୁ ମରକତ ମୁଦ୍ରାଟିଏ ବାହାର କରି ) ଅଉତ କିଛି ନାହିଁ ସୁନୟନା, ଏଇ ମରକତ ମୁଦ୍ରାଟି ତୋ ଝିଅ କୋଇଁଙ୍କୁ ପିନ୍ଧେଇ ଦେ ।

ନୟନା ।। ଆପଣ ମୋତେ ଅନେକ ଦେଇଛନ୍ତି ସ୍ୱାମୀ । ଆଉ ଆଜ କାହିଁକି ?

ସୂର୍ଯ୍ୟଶ୍ୱଜ୍ଞ ।। ଓ, ତୁ ଭାବୁଚୁ ମୁଁ ଆଜ ଗରିବ ହୋଇ ଯାଇଚି । ଆଜ ରାତିକୁ ମୋତେ ସେଇଟା ଭୁଲିବାକୁ ଦେ ସୁନୟନା । ନେ, ମନା କରନା ।

ନୟନା ।। ( ମୁଦିଟି ଗ୍ରହଣ କଲ୍ । ତା ପରେ ତଲେ ବସି ପଡି କିଛି ପାନୀୟ ଗ୍ଲାସରେ ଢାଳି ରାଜାଙ୍କ ସମ୍ମୁଖରେ ବଢ଼ାଇ ଦେଲ । ରାଜା ସୂର୍ଯ୍ୟଶ୍ୱଜ୍ଞ ଗ୍ଲାସ୍‌ଟି ହାତରେ ଧରି ଉଦ୍ୟାନ ଭିତରେ ପଦଗ୍ଚରଣା କରୁ କରୁ ଭାବପ୍ରବଣତାରେ କହିଲେ ) ଆମର ପ୍ରଥମ ରାତିରେ ତୁ ଯୋଉଁ ଗୀତଟି ଗାଇଥିଲୁ, ମନେ ଅଛି ସୁନୟନା ? ଆଜ ଠିକ୍‌ଏ ସେଇଟା ମୋତେ ଶୁଣେଇବୁ ।

ନୟନା ।। ପାଠ ତାନପୁରାଟା ନେଇ ଆ ତ । ପାଠ ଭିତରକୁ ଯାଇ ତାନପୁରା ଆଣିଦେଲ । ନୟନା ତାନପୁରା ଧରି ଆଳାପ କଲ ଏବଂ ଗୀତଟି ଗାଇ ଉଠିଲ । ଅତୀତକୁ ଅତୀଥରେ ଜୀବନ୍ତ କରି ।

( ଏପଟେ ନୟନାର ଘରର ଅନ୍ଦର ମହଲଟି ସ୍ୱଳ୍ପ ଆଲୋକିତ ହେଲ । ଦେଖାଗଲ ମଧୁଶଯ୍ୟା ରାତିର ସମସ୍ତ ଆୟୋଜନ । ଜେମସ୍ ବର ବେଶରେ ପଲଙ୍କ ଉପରେ ବସିଥିବାର ଦେଖାଯାଏ । )

ସୂର୍ଯ୍ୟଶ୍ୱଜ୍ଞ ।। ସେଇ ଗୀତ, ସେଇ ସୁର । ମୋତେ ମନେ ପକେଇ ଦଉଚ, ବାସର ରାତିର ସେଇ ରୋମାଞ୍ଚକର ମୁହୂର୍ତ୍ତ !!! ମୁଁ ପଲଙ୍କ ଉପରେ ବସିଥାଏ । ଦାସୀ ଆଣି ତୋତେ ଛାଡ଼ି ଦେଇଗଲ ।

—ତେଷଠି—

( ନୟନା ଘରର ଅନ୍ଦର ମହଲରେ, ପାଟ ଆଣି ବଧୂ ବେଶରେ ଲବଣ୍ୟକୁ ଗୁଡ଼ି ଦେଇଗଲା ।)

ସୂର୍ଯ୍ୟଭାନୁ ।। ବଧୂ ବେଶରେ ତୁ ଯାହା ଦିଶୁଥାଉ !!! ସେତେବେଳେ ଦେହରେ ତୋର ଭରା ଯୌବନର ଜୁଆର । ତୋର ସେଇ ଲାଲ ବନାରସୀ, ଜରି ଓଢ଼ଣୀ, ଆଖିତଳକୁ । ଲାଜ ଆଉ ଭୟରେ ଦେହ ଶୋଟିପଡ଼ଣେ ଥରୁଥାଉ ।

( ଉପରୋକ୍ତ ସଂଳାପ ଅନୁଯାୟୀ ଆଜି ମଧ୍ୟ ଲବଣ୍ୟ ଓ କେମସ୍ ସେହିପରି ଏକ ଦୃଶ୍ୟର ଅଭିନୟ କରିଚାଲିଲେ )

ସୂର୍ଯ୍ୟଭାନୁ ।। ହବା କଥା, ପହିଲ ରାତି । ନୂଆ ପୁରୁଷର ସ୍ପର୍ଶ !!! ମୁଁ ତୋତେ ନାଁ ଧରି ଡାକିଲି । ତୁ ଲାଜରେ ଆଉରି ନଇଁ ଗଲୁ । ଓଢ଼ଣା ଟେକି ତୋ ମୁହଁଟି ଦେଖିଲି । ସତେ ଯେମିତି ଫୁଟନ୍ତା ପଦ୍ମ !!! ଦୁଇ ବାହୁରେ ଭିଡ଼ି ଧରି ଚିବୁକ ଆଉଜାଇ ଆଣିଲି । ଓଠଟା ତୋ ଓଠ ଆଡ଼କୁ ନଇଁ ଆସିଲା ଆପେ ଆପେ ।

( ଉପରୋକ୍ତ ସଂଳାପ ସହିତ ତାଳ ଦେଇ କେମସ୍ ଏବଂ ଲବଣ୍ୟ ଦୁହେଁ ଠିକ୍ ଅତୀତର ସେଇ ଦିନର ପୁନରାବୃତ୍ତି କରୁଥାଆନ୍ତି । ନେପଥ୍ୟେ ଦ୍ରୁତ ଲୟରେ ଆଲାପ ଚାଲିଥାଏ ସୁନୟନାର)

ସୂର୍ଯ୍ୟଭାନୁ ।। ତୁ ଆଉ ରହି ପାରିଲୁ ନାହିଁ । ହାତମାରି ଦୀପଟା ଲିଭାଇ ଦେଲୁ ।

(ଅନ୍ଦର ମହଲରେ ଲବଣ୍ୟ ଦୀପ ଲିଭାଇ ଦେବାର ଦେଖାଯାଏ । ଘର ଭିତରେ ଖାଲି ଅନ୍ଧାର । ସକାଳର ଆଲାପ ଭାସି ଆସେ ନେପଥ୍ୟରୁ କାହାର ସୁଦୂରଗମ୍ଭୀର କଣ୍ଠରେ । ବଗିଚାରେ ଦେଖାଯାଏ ସୂର୍ଯ୍ୟଭାନୁ ବସିଥିବା ପଥର ବେଞ୍ଚରେ ମଥାରଖି ଶୋଇ ଯାଇଚନ୍ତି । ତାଙ୍କ କୋଳରେ ମଥାରଖି, ତଳେ ବସି ନୟନା ମଧ୍ୟ ତାନପୁରା ହାତରେ ଶୋଇଯାଇଚି । କିଛିକ୍ଷଣ ପରେ ଲଲ୍ଲୁର ପାଟି ବାହାରେ ଶୁଭେ । )

ଲଲ୍ଲୁ ।। ହାମ୍ କୁଛ ନେଇ ଶୁନେଙ୍ଗେ; ବାବୁଜୀ ଆପ୍‌କୋ ଅଭି ଇଁହାସେ ନିକଲ୍ ଯାନା ହୋଗା । ଯାଇୟେ, ଅଭି ଯାଇୟେ । ଏ ନୟନା-ବାଈ, ନୟନାବାଈ, ଦେଖ୍ ଏ ଲଡ଼କା ଜୁଲମ କର୍ ରହା ହୈ ।

(ଉଦ୍ୟାନରେ ଶୋଇଥିବା ରାଜା ଓ ନୟନା ଆଖି ମଳି ଉଠି ପଡ଼ନ୍ତି; ବୁଝି ପାରନ୍ତି ନାହିଁ ହଠାତ୍ କ'ଣ ହେଲା)

ନୟନା ।। (ରାଜାଙ୍କ ନିକଟରୁ ଉଠିଯାଇ) କଣ ହେଉଛି ଲଲ୍ଲୁ ?

ଲଲ୍ଲୁ ।। ଓ, ସାହାବ୍ ଗ୍ରେକ୍‌ସ୍ ବୋଲତା ହୈ ତେରେ ଲଡ଼କୀକୋ ଲେକର୍ ଯାୟେଗା—

ନୟନା ।। (ଉଦ୍ୟାନରୁ ବୈଠକଖାନାକୁ ଆସି) କ'ଣ ହେଲା ? ଟୋକା କହୁଛି ମୋ ଝିଅକୁ ସାଙ୍ଗରେ ନେଇଯିବ ? ଯା' କହିଦେ ଲଲ୍ଲୁ ; ଏ ଘରେ ବାହାଘର ହୁଏ ରାତକ ପାଇଁ । ରାତି ପାହିଲେ ସବୁ ଶେଷ ।

ଲଲ୍ଲୁ ।। ମୈଁ ସବ୍ ବୋଲ୍ ଚୁକାହୁଁ । ଲେକିନ୍ ଓ ସାହାବ ନେହିଁ ସମଝ୍‌ତା—

ନୟନା ।। ଯେମିତି ହେଉ ତାକୁ ବିଦାକର ଲଲ୍ଲୁ !

ଲଲ୍ଲୁ ।। ନିକାଲ୍‌ନା ମେରା ବାଏଁ ହାତ୍‌କା ଖେଲ୍ । ଲେକିନ୍ ଦିଲ୍ ନେହିଁ ଚାହ୍‌ତା ।

ନୟନା ।। ତେରା ଭି କୋଇ ଦିଲ୍ ହୈ । ଯା, ଯା, ତାକୁ ଯିମିତି ହେଉ ବିଦାକର ।

(ସୂର୍ଯ୍ୟଭାନୁ ପାଟିତୁଣ୍ଡ ଶୁଣି ଉଦ୍ୟାନରୁ ବୈଠକଖାନାକୁ ଆସି ପଚାରିଲେ)

ସୂର୍ଯ୍ୟଭାନୁ ।। 'କ'ଣ ହେଉଛି ସୁନୟନା' ?

ନୟନା ।। ହବ ଆଉ କଣ ? ସେ ବିଦେଶୀ ଟୋକାଟା ମୋ ଝିଅକୁ ସାଥିରେ ନେଇଯିବ ବୋଲି ଜିଦ୍ ଧରିଛି । ଏ ଲଲ୍ଲୁ ତାକୁ ଧକ୍‌କା ଦେଇ ରାସ୍ତା ଦେଖେଇ ଦେ—

ସୂର୍ଯ୍ୟଭାନୁ ।। ନା, ଲଲ୍ଲୁ ତାକୁ ଡାକିଦେ । ମୁଁ ଟିକିଏ ତାକୁ ଦେଖେଁ । ପିଲାଲୋକ, ପୁଣି ବିଦେଶୀ; ମୁଁ ଟିକିଏ ତାକୁ ପଚାରେ କ'ଣ ସେ ଚାହୁଁଛି ।

ନୟନା ।। (ବାଧ୍ୟ ହୋଇ) ହଉ ଲଲ୍ଲୁ ସେ ପିଲାକୁ ଡାକିଦେ ।

(ଲଲ୍ଲୁ ଭିତରକୁ ଯାଇ ଜେମସ୍‌କୁ ସାଥିରେ ନେଇ ଫେରୁଛି । ଜେମସ୍ ଗୁରୁତର ପଞ୍ଜାବୀରେ ଲବଣ୍ୟ ମଥାର ସିନ୍ଦୂର ବୋଲି ହେଇଯାଇଛି)

ସୂର୍ଯ୍ୟଭାନୁ ॥ (ଜେମସ୍ ଉପରେ ଆଖି ବୁଲେଇ ନେଇ) You are James ???
ଜେମସ୍ ॥ Yah.
ସୂର୍ଯ୍ୟଭାନୁ ॥ I am "Suryavanu."
James ॥ (ନୂତନ ଆଗନ୍ତୁକଙ୍କୁ ଚହ୍ନି ନପାର) 'Suryavanu' ! Surya ! you mean the Sun !!!

ସୂର୍ଯ୍ୟଭାନୁ ॥ (ଜଣେ ଭଣି) I think You are from States ?
James ॥ Yah, from California.

ସୂର୍ଯ୍ୟଭାନୁ ॥ I congratulate you young-man ! you are lucky.

James ॥ (congratulation ଶବ୍ଦ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରି) congratulation ? See—these people, they force me to leave my wife and leave India. After all I am mrried. I can't leave my wife.

ସୂର୍ଯ୍ୟଭାନୁ ॥ ମୁଁ ସବୁ ଜାଣେ ଜେମସ୍ । Are you serious about it ?

James ॥ What do you mean ? I am married to an Indian girl in traditional Indian custom.

ସୂର୍ଯ୍ୟଭାନୁ ॥ Will you give a word of honour, that you won't divorce her ?

James ॥ Divorce !!! (ଘୃଣାରେ) What do you say ?
ସୂର୍ଯ୍ୟଭାନୁ ॥ Please don't mind, it so often happens in your country.

James ॥ It's true. It happens. That's why I hate my culture.

ସୂର୍ଯ୍ୟଭାନୁ ॥ Hate !!! କିନ୍ତୁ କାହିଁକି ?
James ॥ (ଦୁଃଖରେ) ମୁଁ ସେତେବେଳେ ସ୍କୁଲରେ; I lost my mummy.
ସୂର୍ଯ୍ୟଭାନୁ ॥ Lost !!! (କାରଣ ବୁଝି ନପାର)

James ॥ Because, Because, ମୋର ବାପା—ମୋ ମା'ଙ୍କୁ divorce କଲେ । I was shocked. ମୋ ବାପା ଆଉଥରେ ବିବାହ କଲେ ।—again it was a shock । ସେଇ ଦିନରୁ ମୁଁ ଜାଣିଛି Divorce କି painful. ଏଇ divorce ପାଇଁ ଆମ ଦେଶରେ କେତେ ଅଶାନ୍ତି !! କେତେ ମାନସିକ ଯନ୍ତ୍ରଣା !!! ମୁଁ ସେ ସବୁ ଆଖିରେ ଦେଖିଛି । ଅଛୁ, ଦିନେ Fade-up ହୋଇ ଦେଶ ଛାଡ଼ି ଚାଲି ଆସିଛି । ତା'ପରେ ପୃଥିବୀର ଅନେକ ଦେଶ ବୁଲି ବୁଲି, ଆସିଛି ଏଇ Indiaକୁ । Indiaରେ poverty ଅଛି । କିନ୍ତୁ ମୁଁ ଏଠି ଦେଖିଛି ଏକ rich culture. ସେଇଥିପାଇଁ ମୁଁ Indian-ଝିଅ ଲାବଣ୍ୟଙ୍କୁ ବିବାହ କରିଛି । Please ଆପଣ ଟିକିଏ ସେମାନଙ୍କୁ ବୁଝାଇ ଦିଅନ୍ତୁ । ମୋ wifeକୁ ସେମାନେ ମୋ ସାଙ୍ଗରେ ଯିବାକୁ ଅନୁମତି ଦିଅନ୍ତୁ । please !

ସୂର୍ଯ୍ୟଭାନୁ ॥ Good ! I will help you. Don't worry.

James ॥ I remain grateful to you.

ସୂର୍ଯ୍ୟଭାନୁ ॥ ଯାଅ । ତମେ ଲାବଣ୍ୟକୁ ସାଙ୍ଗରେ ନେଇ ଯିବା ପାଇଁ ପ୍ରସ୍ତୁତ ହୁଅ ।

ଜେମସ୍ ॥ (ସୂର୍ଯ୍ୟଭାନୁଙ୍କୁ ନିଜର କୃତଜ୍ଞତା ଜଣାଇ ପାଦଧୂଳି ନେଲେ । ପାଦ ଛୁଇଁଲା ବେଳେ ଭାବାବେଗରେ ସୂର୍ଯ୍ୟଭାନୁ ଜେମସ୍‌କୁ ଧରି ନେଇ ନିଜ ଛାତିରେ ଭିଡ଼ି ଧରିଲେ । ତାଙ୍କ ଆଖି ଅଶ୍ରୁଳ ହୋଇ ଉଠିଲା) Have patience my son ! have patience.

(ଜେମସ୍ ତାଙ୍କ ବାହୁ ବନ୍ଧନରୁ ମୁକ୍ତ ହୋଇ ଅନ୍ଦର ମହଲକୁ ଚାଲିଗଲା)

(ଏତିକିବେଳେ ନମ୍ରତା ଆସି ଦେଖିଛି ସୂର୍ଯ୍ୟଭାନୁଙ୍କ ଆଖିରେ ଲୁହ)

ନମ୍ରତା ॥ ଗୁରୁ ! ଆପଣଙ୍କ ଆଖିରେ ଲୁହ ?

ସୂର୍ଯ୍ୟଭାନୁ ॥ ଲାବଣ୍ୟ ଆଜି ଚାଲିଯିବ । ମୁଁ କାନ୍ଦିବ ନାହିଁ ?

ନମ୍ରତା ॥ ନା, ସେ ଯାଇ ପାରିବ ନାହିଁ । କୋଉ ଝିଅ ଏ ଘରୁ କେବେ ଗୋଡ଼ କାଢ଼ି ଯାଇନି ।

ସୂର୍ଯ୍ୟଭାନୁ ॥ ନା ସୁନମ୍ରତା ! ସେ ଦୁହିଁଙ୍କୁ ଯିବାକୁ ଦେ ।

ନମ୍ରତା ॥ ନା, ଗୁରୁ ! ମୋତେ ବାଧ କରନ୍ତୁ ନାହିଁ ।

—ସପ୍ତଷଠି—

ସୂର୍ଯ୍ୟଭାନୁ ॥ ମିଛରେ ଜିଦ୍ କରି ସେମାନଙ୍କର ଯିବାର ବାଟ ବନ୍ଦ କରନା ସୁନୟନା ! ଦିନ ବଦଳିଛି । ତା' ସାଙ୍ଗରେ ତାଳ ଦେଇ ବଦଳୁଛି ମଣିଷର ମନ, ଜୀବନର ମୂଲ୍ୟବୋଧ ! ଆମେ କେହି ତାକୁ ରୋକି ପାରିବା ନାହିଁ । ମହାକାଳର ନିର୍ଦ୍ଦେଶରେ ଅନେକ ପୁରୁଣା ଭାଙ୍ଗି ଚୁରି ନୂଆ ଗଢ଼ା ହେବ । ନୂଆ ସମାଜ, ନୂଆ ପୃଥିବୀ । ମୋ ଉଆସ ଭାଙ୍ଗି ଯାଇଛି । ତୋର ଏଇ କୋଠୀ ମଧ୍ୟ ଦିନେ ମାଟିରେ ମିଶିଯିବ । ମଣିଷ ଯୁଗେ ଯୁଗେ ପରିବର୍ତ୍ତନକୁ ସ୍ୱାଗତ କରିଛି । ନୂତନକୁ ଆଦର ନେବା ଯୁଗର ଧର୍ମ । ସେଇଥିପାଇଁ ମଣିଷ ନିଜେ ବିପ୍ଳବୀ ସାଜେ । ପୁରାତନକୁ ଭାଙ୍ଗି ନୂତନକୁ ସ୍ୱୀକୃତି ଦିଏ । ଏଇ ଚିରନ୍ତନ ଯୁଗ ଧର୍ମକୁ ଆମେ ଅସ୍ୱୀକାର ବା କରିବା କାହିଁକି ? ନା—ଆମେ ଆଜି ଜେମସ୍ ଆଉ ଲବଣ୍ୟ ଦୁହିଁଙ୍କୁ ଆଶୀର୍ବାଦ କରିବା ।

(ଏତିକିବେଳେ ଜେମ୍ସ୍ ଲବଣ୍ୟକୁ ସାଥିରେ ନେଇ ଭିତରୁ ଆସିଲ । ସୂର୍ଯ୍ୟଭାନୁ ଦୁହିଁଙ୍କୁ ସ୍ୱାଗତ ଜଣାଇଲେ ।)

ସୂର୍ଯ୍ୟଭାନୁ ॥ ଆ, ଝିଅ । ଆସ, ଜେମସ୍ !

(ଜେମ୍ସ୍ ଆସି ସୁନୟନା ନିକଟରେ ଏବଂ ଲବଣ୍ୟ ଆସି ରାଜା ସୂର୍ଯ୍ୟଭାନୁଙ୍କ ନିକଟରେ ଛିଡ଼ା ହେଲ । ନୟନା ଜେମସ୍‌କୁ ଏବଂ ସୂର୍ଯ୍ୟଭାନୁ ଲବଣ୍ୟକୁ ଆଶୀର୍ବାଦ କରି ଆନନ୍ଦରେ ଜଡ଼ାଇ ଧରିଲେ)

ବାହାରେ ରାଜପଥରେ ଶୁଭିଲା ଏକ ଶୋଭାଯାତ୍ରାର ସ୍ଲୋଗାନ ।

ସ୍ଲୋଗାନ ॥ ଇନ୍‌କ୍ଲାବ୍ ଜିନ୍ଦାବାଦ୍ । ଇନ୍‌କ୍ଲାବ୍ ଜିନ୍ଦାବାଦ ।

ସୂର୍ଯ୍ୟଭାନୁ ॥ ଏଇ ଶୁଣ ସୁନୟନା ! ରାଜପଥରେ ଇନକ୍ଲାବର ସ୍ଲୋଗାନ । ଖାଲି ରାଜପଥରେ ନୁହେଁ—ସମଗ୍ର ପୃଥିବୀର ମଣିଷ ମୁହଁରେ ଯୁଗେ ଯୁଗେ ବିପ୍ଳବର ଏଇ ସ୍ଲୋଗାନ—ପୁରାତନକୁ ଭାଙ୍ଗି ନୂତନକୁ ପ୍ରତିଷ୍ଠିତ କରିଛି । ଏଇ ଅଗ୍ନି-ମନ୍ତ୍ର ଦିନେ ଫ୍ରାନ୍‌ସ ଦେଶରେ ଲୁଇର ଶାସନକୁ ଭାଙ୍ଗିଥିଲା । ଭାଙ୍ଗିଥିଲା ରୁଷ୍ ଦେଶରେ ଜାର୍ ଶାସନକୁ । ଭାରତରେ ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଏଇ ଡାକରା ରାଜାର ସିଂହାସନ ଥରାଇ ଦେଇଥିଲା । ସ୍ୱାଧୀନତା ଆନ୍ଦୋଳନ ସମୟରେ

ପୁଣି ସେଇ ଡାକରା ବ୍ରିଟିଶ ସିଂହାସନକୁ ଟଳାଇ ଦେଲା । ଆସିଲା ଗଣତନ୍ତ୍ର । ପୁଣି ଆଜ ଏଇ ସ୍ୱାଧୀନ ଦେଶରେ, ଗଣତନ୍ତ୍ର ରାଷ୍ଟ୍ରରେ ବିପ୍ଳବର ଡାକରା ଶୁଭୁଛି । ପୁଣି ଶୁଭୁଛି "ଇନ୍‌କିଲାବ୍ ଜିନ୍ଦାବାଦ—" ଗଣତନ୍ତ୍ରର ଦୁର୍ନୀତିଗ୍ରସ୍ତ ନେତା ମାନଙ୍କ ବିରୁଦ୍ଧରେ । ନୂତନ ଯୁଗ ଆସିଛି । ନୂତନ ଦିଗ୍‌ଦର୍ଶକ ଜନ୍ମ ନେଇଛି ସୁନୟନା ! ଆ' ଆମେ ଆଜ ଜେମସ୍ ଆଉ ଲବଣ୍ୟଙ୍କୁ ବିଦାୟ ଦେଇ ନୂତନ ବିପ୍ଳବର ସୂର୍ଯ୍ୟଙ୍କୁ ସ୍ୱାଗତ କରିବା ।

(ରାଜା ସୂର୍ଯ୍ୟଭାନୁ ଲବଣ୍ୟଙ୍କୁ ଏବଂ ନୟନା ଜେମସ୍‌ଙ୍କୁ ଧରି ପାଦପ୍ରଦୀପ ଆଗରେ ତଳକୁ ଲମ୍ବି ଯାଇଥିବା ପାହାଚ ପର୍ଯ୍ୟନ୍ତ ଆଗେଇ ନେଲେ । ତା'ପରେ ସେମାନଙ୍କୁ ଆଗକୁ ଯିବାକୁ ଛାଡ଼ି ଦେଇ ନିଜେ ଦୁହେଁ ପଛକୁ ଫେରିଲେ । ସେତେବେଳକୁ ସୁନୟନାର ଉଦ୍ୟାନରେ ସକାଳ ସୂର୍ଯ୍ୟ ଲାଲ ରଶ୍ମି ବିକିରଣ କରି ଉଇଁ ଆସୁଥିଲା । ସେଇ ଉଠି ଆସୁଥିବା ସୂର୍ଯ୍ୟ ଆଗରେ ଦୁଇଟି ମଣିଷର ସିଲ୍‌ହୁଟ୍ ଛିଡ଼ା ହୋଇ ସୂର୍ଯ୍ୟଙ୍କର ବନ୍ଦନା ଗାଉଥିଲେ ।)

"ଜବା କୁସୁମ ସଂକାଶଂ
କଶ୍ୟପେୟଂ ମହାଦ୍ୟୁତିଂ ।
ଧ୍ୱନ୍ତାରି ସର୍ବ ପାପଘ୍ନଂ
ପ୍ରଣତୋସ୍ମି ଦିବାକରୋଃ ।



—ଅଣଚୁଷ—



ଓଡ଼ିଆ ନାଟକ ଓ ଚଳଚ୍ଚିତ୍ରରେ ଡାକ୍ତର ବସନ୍ତ ମହାପାତ୍ର ଏକ ଅବିସ୍ମରଣୀୟ ପ୍ରତିଭା । ଲୋକେ ତାଙ୍କୁ ଡାକ୍ତର ଭାବରେ ଯେତିକି ଜାଣନ୍ତି, ତାଠୁଁ ଅଧିକ ଜାଣନ୍ତି ନାଟ୍ୟକାର ଓ ଚିତ୍ରନାଟ୍ୟକାର ଭାବରେ । ବିଶେଷତଃ ଓଡ଼ିଆ ଚଳଚ୍ଚିତ୍ରରେ ନୂତନ ଚନ୍ଦ୍ରାଧାରର ନାୟକ ଭାବରେ ତାଙ୍କର ଭୂମିକା ଉଲ୍ଲେଖନୀୟ । "ଶେଷ ଶ୍ରାବଣ" ଚଳଚ୍ଚିତ୍ର ପାଇଁ ସେ ରାଜ୍ୟ ତଥା ଜାତୀୟ ସ୍ତରରେ ପୁରସ୍କୃତ । ଆଜର ପରୀକ୍ଷା ନିରୀକ୍ଷା ମଧ୍ୟରେ "ଶୃଙ୍ଗାର ଶତକ" ଆଣି ଦେଇଛନ୍ତି ଏକ ନୂତନ ମଞ୍ଚଶୈଳୀର ସ୍ୱାଦ । ଏହି ଅଭିନବ ମଞ୍ଚଶୈଳୀରେ ଲିଖିତ ତାଙ୍କର ନାଟକ 'ଜ୍ୱାଳା', 'ବହ୍ନିକନ୍ୟା', 'ଅଲିଭା ଦୀପ', ସମଗ୍ର ଓଡ଼ିଶାରେ ଏକ ଅପୂର୍ବ ମଞ୍ଚ-ମାୟାର ତଡ଼ିତ୍ ସୃଷ୍ଟି କରି ପାରିଛି । ବହୁ ନୂତନ ପ୍ରତିଭାଙ୍କୁ ମଂଚ ଓ ଚଳଚ୍ଚିତ୍ରରେ ସୁଯୋଗ ଦେଇ ସେ ଓଡ଼ିଆ ନାଟକ କ୍ଷେତ୍ରରେ ଯେଉଁ ଜ୍ୱଳନ୍ତ ଦିଗ୍‌ଦର୍ଶନର ସୂଚନା ଦେଇଛନ୍ତି, ତାହା ଚିରଦିନ ତାଙ୍କ ଅଖଣ୍ଡ ପ୍ରତିଭାର ସ୍ୱାକ୍ଷୀ ହୋଇ ରହିଥିବ ।

ପ୍ରକାଶକ